# ପ୍ରାକ୍ କଥନ ...




୨୦୦୫ ମସିହାର ମଧ୍ୟଭାଗରେ ସୂଚନା ଅଧିକାର ଅଧିନିୟମ ପ୍ରଣୟନ ହେଲା । ଶାସନ ପ୍ରଣାଳୀକୁ ଅଧିକ ସ୍ୱଚ୍ଛ ଏବଂ ଉତ୍ତରଦାୟୀ କରିବା ଲକ୍ଷ୍ୟରେ, ଏହି ଅଧିନିୟମ ସରକାରୀ କର୍ତ୍ତୃପକ୍ଷଙ୍କ ଅଧୀନରେ ରହିଥିବା ତଥ୍ୟଗୁଡ଼ିକୁ ନାଗରିକମାନେ ହାସଲ କରିବା ନିମନ୍ତେ ପଥ ପରିଷ୍କାର କଲା । ମାତ୍ର ଦେଶରେ ଆଜି ପର୍ଯ୍ୟନ୍ତ ଯେତେସବୁ ଆଇନ୍ ପ୍ରଣୟନ କରାଯାଇଛି, ସେ ସବୁର ସଫଳତା ଏହାର ସଠିକ୍ କାର୍ଯ୍ୟକାରିତା ଉପରେ ନିର୍ଭରଶୀଳ । ସୂଚନା ଅଧିକାର ଅଧିନିୟମ ଏକ ଶକ୍ତିଶାଳୀ ତଥା ଜନହିତକର ଆଇନ୍ ଭାବେ ସମଗ୍ର ଦେଶରେ ଉପସ୍ଥାପିତ ହେଲା । ଭାରତୀୟ ଗଣତାନ୍ତ୍ରିକ ବ୍ୟବସ୍ଥାରେ ସାଧାରଣ ନାଗରିକ ହିଁ ଶାସନର ଗୁରୁତ୍ୱପୂର୍ଣ୍ଣ ଅଂଶୀଦାର । ଶାସନ ପ୍ରକ୍ରିୟାରେ ଯେଉଁସବୁ ନିଷ୍ପତ୍ତି ନିଆଯାଉଛି, ସେ ସମ୍ପର୍କରେ ସୂଚନା ହାସଲ କରିବା ବସ୍ତୁତଃ ସାଧାରଣ ନାଗରିକଙ୍କ ମୌଳିକ ଅଧିକାର । ଏହି ଦୃଷ୍ଟିରୁ, ଭାରତର ପଛୁଆ ରାଜ୍ୟଗୁଡ଼ିକରେ ଏହି ଆଇନ୍‌କୁ କାର୍ଯ୍ୟକାରୀ କରିବାର ଯଥେଷ୍ଟ ଗୁରୁତ୍ୱ ଥିଲା । ବିଶେଷକରି, ବିକାଶର ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା କ୍ଷେତ୍ରରେ, ସ୍ୱଚ୍ଛତା ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଥିବା ଦୃଷ୍ଟିରୁ ଏହି ଆଇନ୍ ଅପରିହାର୍ଯ୍ୟ ବୋଲି ଅନୁଭୂତ ହୁଏ । ପରନ୍ତୁ, ଆଇନ୍ କାର୍ଯ୍ୟକାରୀ ହେବାର ଏକ ବର୍ଷ ପରେ ଯେଉଁ ଚିତ୍ର ସ୍ପଷ୍ଟ ହୋଇଉଠେ, ତାହା ହେଉଛି ସଚେତନ ନାଗରିକମାନଙ୍କ କ୍ଷେତ୍ରରେ ଏହା ଅଧିକ ଫଳପ୍ରଦ । ଅନୁଧ୍ୟାନ କଲେ ଜଣାଯାଏ ଯେ, ସରକାରୀ କର୍ମଚାରୀ କିମ୍ବା ସରକାରୀ କାର୍ଯ୍ୟାଳୟ ସହିତ ସଂପୃକ୍ତ ନାଗରିକମାନଙ୍କ ମଧ୍ୟରେ ଏ ଆଇନ୍ ସମ୍ପର୍କରେ ସଚେତନତା ଅଧିକ । ସାଧାରଣ ନାଗରିକ ସଚେତନ ହେବା ନିଶ୍ଚିତ ଭାବରେ ସମୟ ସାପେକ୍ଷ । ତେବେ ଏହି ଆଇନ୍ ତୃଣମୂଳ ସ୍ତରରେ କି ପ୍ରକାର ପ୍ରଭାବ ପକାଉଛି ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ କେଉଁ ବାର୍ତ୍ତା ପ୍ରଚାର କରୁଛନ୍ତି ତାହା ସଠିକ୍ ଆକଳନ କରିବାର ଜରୁରି ଆବଶ୍ୟକତା ରହିଛି । ସୂଚନା ଓ ଲୋକ ସଂପର୍କ ବିଭାଗ ଓଡ଼ିଶାରେ ଏହି ଆଇନ୍‌କୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ବହୁବିଧ କାର୍ଯ୍ୟକ୍ରମ ଗ୍ରହଣ କରିଛି । ଏହି ବିଭାଗରେ, ଏପରି ଏକ ଆଇନ୍‌କୁ କାର୍ଯ୍ୟକାରୀ କରିବା ନିମନ୍ତେ ପ୍ରାକ୍ ଅଭିଜ୍ଞତା ନଥିଲେ ମଧ୍ୟ ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଅନେକଗୁଡ଼ିଏ ଆଗୁଆ ପଦକ୍ଷେପ ଗ୍ରହଣ କରାଯାଇଛି । ଓଡ଼ିଆ ଭାଷାରେ ଏହି ଅଧିକାର ସମ୍ପର୍କରେ ଗୋଟିଏ ପୁସ୍ତକରେ ଅନେକଗୁଡ଼ିଏ ତଥ୍ୟ ସନ୍ନିବେଶିତ କରି ଉପସ୍ଥାପିତ କରିବାର ଯେଉଁ ଲକ୍ଷ୍ୟ ଥିଲା, ଉତ୍କଳ ପ୍ରସଙ୍ଗର ଚଳିତ ସଂଖ୍ୟାରେ ଏହା କେତେକାଂଶରେ ପୂରଣ ହୋଇଛି । ଆମର ଦୃଢ଼ ବିଶ୍ୱାସ, ଏହି ସଂଖ୍ୟାଟି ପାଠକପାଠିକାମାନଙ୍କ କର୍ମମୟ ଜୀବନରେ ଯଥେଷ୍ଟ ସହାୟକ ହେବ ।

ଦିଗମ୍ବର ମହାନ୍ତି

**(ଦିଗମ୍ବର ମହାନ୍ତି)**

କମିଶନର ତଥା ଶାସନ ସଚିବ

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

୬୩ ଭାଗ ୪ର୍ଥ ସଂଖ୍ୟା କାର୍ତ୍ତିକ-ମାର୍ଗଶିର ନଭେମ୍ବର - ୨୦୦୬



**ବାର୍ଷିକ ଦେୟ : ଟ.୫୦.୦୦**
**ପ୍ରତିଖଣ୍ଡ : ଟ.୫.୦୦**



ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
ଫୋନ : ୨୩୯୧୩୫୬, ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in

# ସୂଚୀ

# ଓଡ଼ିଶା ସୂଚନା ଅଧିକାର ନିୟମାବଳୀ, 2005

## ଅଧିସୂଚନା
## ତା.1 ଅକ୍ଟୋବର, 2005

ଏସ୍.ଆର୍.ଓ. ସଂ - 477/2005 - ସୂଚନା ଅଧିକାର ଅଧିନିୟମ, 2005 (2005ର ସଂ22)ର ଧାରା 27 ଦ୍ୱାରା ଅର୍ପିତ କ୍ଷମତାର ପ୍ରୟୋଗକ୍ରମେ, ରାଜ୍ୟ ସରକାର ଏତଦ୍ଦ୍ୱାରା ନିମ୍ନଲିଖିତ ନିୟମାବଳୀ ପ୍ରଣୟନ କରିଛନ୍ତି :-

1. ସଂକ୍ଷିପ୍ତ ନାମ ଓ ପ୍ରାରମ୍ଭ :- (1) ଏହି ନିୟମାବଳୀ, ଓଡ଼ିଶା ସୂଚନା ଅଧିକାର ନିୟମାବଳୀ, 2005 ଭାବରେ ଅଭିହିତ ହେବ ।

(2) ଓଡ଼ିଶା ଗେଜେଟ୍‌ରେ ପ୍ରକାଶନ ତାରିଖଠାରୁ ଏହା ବଳବତ୍ତର ହେବ ।

2. ସଂଜ୍ଞା :- (1) ବିଷୟ ବା ପ୍ରସଙ୍ଗରେ ବିରୁଦ୍ଧାତ୍ମକ କିଛି ନଥିଲେ ଏହି ନିୟମାବଳୀରେ -

(କ) ''ଅଧିନିୟମ'' ଅର୍ଥ ସୂଚନା ଅଧିକାର ଅଧିନିୟମ, 2005 (2005ର ସଂ 22);

(ଖ) ''ବି.ପି.ଏଲ୍. କାର୍ଡ଼'' ଅର୍ଥ ଦାରିଦ୍ର୍ୟ ସୀମାରେଖା ତଳେ ଥିବା କୌଣସି ନାଗରିକଙ୍କୁ ଦିଆଯାଇଥିବା ଏକ କାର୍ଡ଼;

(ଗ) ''ଫିସ୍'' ଅର୍ଥ ସୂଚନା ଯୋଗାଇ ଦେବା ପାଇଁ ଖର୍ଚ୍ଚ ଛଡ଼ା ଧାରା 6ର ଉପଧାରା (1) ଏବଂ ଧାରା 7ର ଉପଧାରା (1) ଏବଂ (5)ର ବ୍ୟବସ୍ଥାଗୁଡ଼ିକ ଅନୁଯାୟୀ କୌଣସି ସୂଚନା ପାଇବା ପାଇଁ ଦରଖାସ୍ତକାରୀଙ୍କ ଦ୍ୱାରା ପ୍ରଦେୟ ପରିମାଣ;

(ଘ) ''ଫର୍ମ'' ଅର୍ଥ ଏହି ନିୟମାବଳୀରେ ସଂଲଗ୍ନ ଏକ ଫର୍ମ;

(ଙ) ''ପରିଚୟ'' ଅର୍ଥ ଜଣେ ବ୍ୟକ୍ତିଙ୍କ ନାଗରିକତ୍ୱ ଦର୍ଶାଇବା ପାଇଁ ଏକ ନିର୍ବାଚନ ଫଟୋ ପରିଚୟପତ୍ର, ଏକ ପାସ୍‌ପୋର୍ଟ ବା ଅନ୍ୟ କୌଣସି ଦସ୍ତାବିଜ୍ ପରି ଏକ ସାକ୍ଷ୍ୟ ପ୍ରମାଣ ଯାହା ଜଣେ ବ୍ୟକ୍ତିଙ୍କର ନାଗରିକତ୍ୱ ସମ୍ବନ୍ଧରେ କର୍ତ୍ତୃପକ୍ଷଙ୍କର ହୃଦ୍‌ବୋଧ କରାଇ ପାରିବ;

(ଚ) ''ନୋଡାଲ୍ ଅଧିକାରୀ'' ଅର୍ଥ ସୂଚନା ଓ ଲୋକ ସଂପର୍କ ବିଭାଗର କମିଶନର ତଥା ଶାସନ ସଚିବ;

(ଛ) ''ଲୋକସୂଚନା ଅଧିକାରୀ'' ଅର୍ଥ ଅଧିନିୟମର ଧାରା 5ର ଉପଧାରା (1) ଅନୁଯାୟୀ ପଦନାମିତ ରାଜ୍ୟ ଲୋକ ସୂଚନା ଅଧିକାରୀ ଏବଂ ଉକ୍ତ ଧାରାର ଉପଧାରା (2) ଅନୁଯାୟୀ ସେଭାବେ ପଦନାମିତ ଜଣେ ସହାୟକ ଲୋକ ସୂଚନା ଅଧିକାରୀ ମଧ୍ୟ ଏହାର ଅନ୍ତର୍ଭୁକ୍ତ;

(ଜ) ''ଅନୁସୂଚୀ'' ଅର୍ଥ ଏହି ନିୟମାବଳୀର ସଂଲଗ୍ନ ଏକ ଅନୁସୂଚୀ; ଏବଂ

(ଝ) ''ରାଜ୍ୟ ସରକାର'' ଅର୍ଥ ଓଡ଼ିଶା ସରକାର ।

(2) ଏହି ନିୟମାବଳୀରେ ବ୍ୟବହୃତ କିନ୍ତୁ ସଂଜ୍ଞା କରାଯାଇନଥିବା ଶବ୍ଦ ଓ ଅଭିବ୍ୟକ୍ତିଗୁଡ଼ିକର ଅର୍ଥ, ଅଧିନିୟମରେ ଯାହା ଅଛି ତାହା ହେବ ।

3. ଲୋକ ସୂଚନା ଅଧିକାରୀମାନଙ୍କ ନିଯୁକ୍ତି ଓ ଦାୟିତ୍ୱ :-

(1) ଏକ ସରକାରୀ କର୍ତ୍ତୃପକ୍ଷ ଯଦି ରାଜ୍ୟ ସରକାରଙ୍କ ଏକ ବିଭାଗ ହୋଇଥାଏ ତେବେ ତାହା ଉଚିତ ମନେ କରିବା ମତେ ଅନୁଶାସନ ସଚିବ ପାହ୍ୟାରୁ କମ୍ ହୋଇନଥିବା ସେପରି ସଂଖ୍ୟକ ଅଧିକାରୀଙ୍କୁ ଲୋକ ସୂଚନା ଅଧିକାରୀ ରୂପେ ପଦନାମିତ କରିବେ ।

(2) ବିଭାଗୀୟ ମୁଖ୍ୟ ଓ ଜିଲ୍ଲା ତଥା ସବ୍‌ଡିଭିଜନ ସ୍ତରର କାର୍ଯ୍ୟାଳୟଗୁଡ଼ିକ ସମେତ ସରକାରୀ ବିଭାଗର ପ୍ରତ୍ୟେକ ଅଧସ୍ତନ କାର୍ଯ୍ୟାଳୟରେ ସେପରି କାର୍ଯ୍ୟାଳୟର ମୁଖ୍ୟ ଉଚିତ ମନେ କରିବା ମତେ ସେପରି ସଂଖ୍ୟକ ଅଧିକାରୀଙ୍କୁ ଲୋକ ସୂଚନା ଅଧିକାରୀ ଓ ସହାୟକ ଲୋକ ସୂଚନା ଅଧିକାରୀ ରୂପେ ପଦନାମିତ କରିବେ ।

(3) ଉକ୍ତ ନିୟମ 3ର ଉପନିୟମ (1) ଓ (2)ରେ ଉଲ୍ଲିଖିତ ସରକାରୀ କର୍ତ୍ତୃପକ୍ଷ ଭିନ୍ନ ଅନ୍ୟ ପ୍ରତ୍ୟେକ ସରକାରୀ କର୍ତ୍ତୃପକ୍ଷ ସେମାନଙ୍କ ଅଧୀନସ୍ଥ ସମସ୍ତ ପ୍ରଶାସନିକ ୟୁନିଟ୍ ଓ କାର୍ଯ୍ୟାଳୟଗୁଡ଼ିକରେ ଏକ ବା ଏକାଧିକ ଲୋକ ସୂଚନା ଅଧିକାରୀମାନଙ୍କୁ ପଦନାମିତ କରିବେ :

ପରନ୍ତୁ ଲୋକ ସୂଚନା ଅଧିକାରୀ ରୂପେ ସେଭାବେ ପଦନାମିତ କଲାବେଳେ ସେପରି ପ୍ରତ୍ୟେକ ସରକାରୀ କର୍ତ୍ତୃପକ୍ଷ ସୁନିଶ୍ଚିତ ହେବେ ଯେ ଅପିଲ୍ କର୍ତ୍ତୃପକ୍ଷ ଭାବେ ବିନିର୍ଦ୍ଦିଷ୍ଟ ହେବା ସକାଶେ ଲୋକ ସୂଚନା ଅଧିକାରୀଙ୍କ ପାହ୍ୟାରୁ ଉଚ୍ଚ ପାହ୍ୟାର ଜଣେ ଅଧିକାରୀ ଅଛନ୍ତି ।

(4) ଲୋକ ସୂଚନା ଅଧିକାରୀଙ୍କର ନିୟନ୍ତ୍ରଣ ବହିର୍ଭୂତ କୌଣସି କାରଣ ହେତୁ ସୂଚନା ପ୍ରଦାନରେ ବିଳମ୍ବ ହେଲେ ସେ ତାହାର କାରଣମାନ ତଥା ଯଥାର୍ଥତା ଅଭିଲିଖିତ କରିବେ ଏବଂ ସେପରି ବିଳମ୍ବ ବିଷୟରେ କାର୍ଯ୍ୟାଳୟ ମୁଖ୍ୟଙ୍କୁ ଜଣାଇବେ ।

4. ସୂଚନା ପାଇବାକୁ ପ୍ରକ୍ରିୟା :- (1) ଜଣେ ନାଗରିକ ଯଦି କୌଣସି ସୂଚନା ପାଇବାକୁ ଚାହୁଁଥିବେ ତେବେ ସେ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହେବା ମତେ ଆବଶ୍ୟକ ଫିସ୍ ସମୁଚିତ ହିସାବ ଶୀର୍ଷରେ ଟ୍ରେଜେରି ଚାଲାଣ କରି ବା ନଗଦ ପ୍ରଦାନ କରି ଲୋକ ସୂଚନା ଅଧିକାରୀଙ୍କୁ ଫର୍ମ 'କ'ରେ ଦରଖାସ୍ତ କରିପାରିବେ :

ପରନ୍ତୁ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ବ୍ୟକ୍ତିମାନଙ୍କ ନିମନ୍ତେ ପ୍ରସ୍ତୁତ ସର୍ବଶେଷ ତାଲିକାରେ ଯେଉଁ ବ୍ୟକ୍ତିଙ୍କ ନାମ ଥିବ ସେପରି ଜଣେ ବ୍ୟକ୍ତିଙ୍କ କ୍ଷେତ୍ରରେ ଦରଖାସ୍ତ ଫିସ୍ ପ୍ରଦାନ କରିବାକୁ ପଡ଼ିବ ନାହିଁ କିନ୍ତୁ ସେଥିପାଇଁ ତାଙ୍କୁ ବି.ପି.ଏଲ୍. କାର୍ଡ଼ ଦାଖଲ କରିବାକୁ ପଡ଼ିବ :

ପରନ୍ତୁ ଇଲେକ୍‌ଟ୍ରୋନିକ୍‌ସ ଗଣମାଧମ ଜରିଆରେ ସୂଚନା ଚାହୁଁଥିବା ଜଣେ ନାଗରିକଙ୍କୁ ଏହି ସାକ୍ଷ୍ୟ ପ୍ରମାଣ ଦେବାକୁ ପଡ଼ିବ ଯେ ସେ ବିହିତ ଦରଖାସ୍ତ ଫିସ୍ ଦାଖଲ କରିଛନ୍ତି ।

(2) ଲୋକ ସୂଚନା ଅଧିକାରୀ ବା ତାଙ୍କ ଦ୍ୱାରା ପ୍ରାଧିକୃତ ଅନ୍ୟ କୌଣସି ଅଧିକାରୀ, ଦରଖାସ୍ତର ପ୍ରାପ୍ତି ସ୍ୱୀକାର କରିବେ ଏବଂ ଦରଖାସ୍ତକାରୀଙ୍କର ପରିଚୟ ସଂପର୍କରେ ତାଙ୍କର ହୃଦବୋଧ ହେବା ପରେ ସୂଚନା ଯୋଗାଇ ଦେବା ସକାଶେ ଦରଖାସ୍ତକାରୀ, ଖର୍ଚ୍ଚ ବାବଦକୁ ଅନୁସୂଚୀରେ ଉଲ୍ଲିଖିତ ହେବା ମତେ କେତେ ଟଙ୍କା ଦେବାକୁ ପଡ଼ିବ, ତାହା ଯଥାସମ୍ଭବ ଶୀଘ୍ର ଫର୍ମ 'ଖ'ରେ ଜଣାଇବେ ।

(3) ସୂଚନା ପ୍ରଦାନ ପାଇଁ ନିର୍ଦ୍ଧାରିତ ମୂଲ୍ୟ ପ୍ରଦାନ ସଂପର୍କରେ ଅବଗତ ହେବାର ପନ୍ଦର ଦିନ ମଧ୍ୟରେ, ଦରଖାସ୍ତକାରୀ ଉକ୍ତ ପରିମାଣ ଦାଖଲ କରିବେ ନଚେତ୍ ଦରଖାସ୍ତଟି ନାକଚ ହୋଇଯିବ ।

5. ନାକଚ ସମ୍ବନ୍ଧରେ ସୂଚନା :- (1) ଧାରା 7ର ଉପଧାରା (1) ଅନୁଯାୟୀ ଏକ ଦରଖାସ୍ତ ଯଦି ନାକଚ ହୁଏ, ତେବେ ଲୋକ ସୂଚନା ଅଧିକାରୀ ଫର୍ମ 'ଗ'ରେ ସେପରି ନାକଚର କାରଣ ଦରଖାସ୍ତକାରୀଙ୍କୁ ଜଣାଇଦେବେ ।

(2) ଯେଉଁ ସୂଚନା ପାଇଁ ଦରଖାସ୍ତ କରାଯାଇଥିବ ତାହା ଯଦି ଇଲେକ୍ଟ୍ରୋନିକ୍ ମାଧ୍ୟମରେ ଉପଲବ୍ଧ ହୋଇପାରୁଥିବ ତେବେ ଲୋକ ସୂଚନା ଅଧିକାରୀ ସମୁଚିତ ୱେବ୍‌ସାଇଟ୍ ଦର୍ଶାଇ ଦରଖାସ୍ତକାରୀଙ୍କୁ ଫର୍ମ 'ଗ'ରେ ଜଣାଇଦେବେ ଯେ ସେ ତାହା ୱେବ୍‌ସାଇଟ୍‌ରୁ ସଂଗ୍ରହ କରନ୍ତୁ ।

6. ସୁପାରିଶ କମିଟିର ବୈଠକ :- ଧାରା 15ର ଉପଧାରା (3) ଅନୁଯାୟୀ ରାଜ୍ୟ ମୁଖ୍ୟ ସୂଚନା ଆୟୁକ୍ତ ଓ ରାଜ୍ୟ ସୂଚନା ଆୟୁକ୍ତଙ୍କ ନିଯୁକ୍ତି ଉଦ୍ଦେଶ୍ୟରେ ରାଜ୍ୟ ସରକାରଙ୍କ ସହିତ ପରାମର୍ଶକ୍ରମେ ନୋଡାଲ ଅଧିକାରୀ କମିଟିର ସୁପାରିଶ ପାଇଁ କମିଟିର ବୈଠକ ଡାକିବେ ।

7. ଅପିଲ୍ ସ୍ମାରକ :- (1) ଧାରା 19ର ଉପଧାରା (1) ଅନୁଯାୟୀ ଏକ ଅପିଲ୍, ସେପରି ଅପିଲ୍ ଶୁଣିବା ପାଇଁ ସରକାରୀ କର୍ତ୍ତୃପକ୍ଷଙ୍କ ଦ୍ୱାରା ପଦନାମିତ ଅଧିକାରୀଙ୍କ ସମକ୍ଷରେ ଫର୍ମ 'ଘ'ରେ ଦାଖଲ କରାଯିବ ।

(2) ଅପିଲ୍ ସ୍ମାରକ ସହିତ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହେବା ମତେ ସେପରି ଫିସ୍ କୋର୍ଟଫିସ୍ ଷ୍ଟାମ୍ପ ଆକାରରେ ଦିଆଯିବ ।

(3) ଧାରା 19ର ଉପଧାରା (1) ଅନୁଯାୟୀ ଏକ ନିଷ୍ପତ୍ତିରେ କ୍ଷୁବ୍ଧ ଜଣେ ବ୍ୟକ୍ତି ତାହାର ଉପଧାରା (3) ଅନୁଯାୟୀ, ରାଜ୍ୟ ସୂଚନା ଆୟୋଗଙ୍କ ସମକ୍ଷରେ, ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହେବା ମତେ ସେପରି ଫିସ୍ କୋର୍ଟ ଫିସ୍ ଷ୍ଟାମ୍ପ ଆକାରରେ ପ୍ରଦାନ କରି ଫର୍ମ 'ଙ'ରେ ଦ୍ୱିତୀୟ ଅପିଲ୍ ଆଗତ କରିପାରିବେ ।

(4) ଉପନିୟମ (1) ଓ (3) ଅନୁଯାୟୀ ଆଗତ ଅପିଲ୍ ସହିତ ଯଦି ଆବଶ୍ୟକ ଫିସ୍ ଦିଆଯାଇନଥାଏ, ତେବେ ସଂପୃକ୍ତ ଅପିଲ୍ କର୍ତ୍ତୃପକ୍ଷ ତାହା ନାକଚ କରି ଦେବେ, କିନ୍ତୁ ଜଣେ ବି.ପି.ଏଲ୍. କାର୍ଡ଼ଧାରୀ ଦରଖାସ୍ତକାରୀଙ୍କୁ କୌଣସି ଫିସ୍ ଦେବାକୁ ପଡ଼ିବ ନାହିଁ ।

(5) ଅପିଲ୍ କର୍ତ୍ତୃପକ୍ଷଙ୍କ ପ୍ରତ୍ୟେକ ଆଦେଶ ସଂପୃକ୍ତ ଦରଖାସ୍ତକାରୀଙ୍କୁ ଏବଂ ଯଦି ଲୋକ ସୂଚନା ଅଧିକାରୀଙ୍କ ଆଦେଶ ବିରୁଦ୍ଧରେ ଅପିଲ୍ କରାଯାଇଥାଏ, ତେବେ ଲୋକ ସୂଚନା ଅଧିକାରୀଙ୍କୁ ଏବଂ ଯଦି ତାହା ଦ୍ୱିତୀୟ ଅପିଲ୍ ହୋଇଥାଏ, ତେବେ ପ୍ରଥମ ଅପିଲ୍ କର୍ତ୍ତୃପକ୍ଷଙ୍କୁ ଜଣାଇ ଦିଆଯିବ ।

8. ରାଜ୍ୟ ସରକାରଙ୍କ ଦ୍ୱାରା ନିର୍ଦ୍ଦେଶାବଳୀ :- ଅଧିନିୟମ ଏବଂ ନିୟମାବଳୀର ବ୍ୟବସ୍ଥାଗୁଡ଼ିକର ସୂଚାରୁ କାର୍ଯ୍ୟାନ୍ୱୟନ ପାଇଁ ଅଧିନିୟମ ଓ ନିୟମାବଳୀର ବ୍ୟବସ୍ଥାଗୁଡ଼ିକ ସହିତ ଅସଂଗତ ହେଉନଥିବା ନିର୍ଦ୍ଦେଶାବଳୀ ନିର୍ଗମନ କରିବା କ୍ଷମତା ରାଜ୍ୟ ସରକାରଙ୍କ ରହିବ ।

9. ଶାସ୍ତି ବିଧାନ :- ସଂପୃକ୍ତ ଲୋକ ସୂଚନା ଅଧିକାରୀଙ୍କ ଉପରେ ଧାରା 20 ଅନୁଯାୟୀ ଯଦି ଶାସ୍ତିବିଧାନ କରାଯାଏ ତେବେ ଉକ୍ତ ଅଧିକାରୀ ତିରିଶ ଦିନ ମଧ୍ୟରେ ଉକ୍ତ ଶାସ୍ତି ପରିମାଣକୁ ଟ୍ରେଜେରି ଚାଲାଣ ମାଧ୍ୟମରେ ରାଜ୍ୟ ବଜେଟର ଉପଯୁକ୍ତ ପ୍ରାପ୍ତି ଶୀର୍ଷରେ ଦାଖଲ କରିପାରିବେ ନଚେତ୍ ସଂପୃକ୍ତ ଅଧିକାରୀଙ୍କ ଦରମାରୁ ଉକ୍ତ ପରିମାଣ ଆଦାୟ କରାଯିବ ।

10. କ୍ଷତିର ହିସାବ :- ଦ୍ରବ୍ୟର ନମୁନା ଆକାରରେ କୌଣସି ସୂଚନା ଦେବା ବେଳେ ଯଦି ସରକାରୀ ସଂପତ୍ତିର କୌଣସି କ୍ଷତି ହୁଏ ତେବେ ସୂଚନା ପ୍ରଦାନ କରିବା ସକାଶେ ଖର୍ଚ୍ଚ ନିର୍ଦ୍ଧାରଣ କଲାବେଳେ ସେପରି ସଂପତ୍ତିର କ୍ଷତି ପରିମାଣ ମଧ୍ୟ ନିର୍ଦ୍ଧାରଣ କରାଯାଇ ତହିଁରେ ଯୋଗ କରାଯିବ ।

11. ରେଜିଷ୍ଟର ରଖିବା :- (1) ଲୋକ ସୂଚନା ଅଧିକାରୀ ତାଙ୍କୁ ମିଳିଥିବା ଦରଖାସ୍ତ ଓ ସେ ଯୋଗାଇ ଦେଇଥିବା ସୂଚନାଗୁଡ଼ିକର ବିସ୍ତୃତ ବିବରଣୀ ଲିପିବଦ୍ଧ କରିବା ପାଇଁ ସେ ଫର୍ମ 'ଚ'ରେ ଏକ ରେଜିଷ୍ଟର ରଖିବେ ଏବଂ ସୂଚନା ଯୋଗାଇ ଦେବା ପରେ ସେ କାର୍ଯ୍ୟାଳୟ ମୁଖ୍ୟଙ୍କୁ ସେ ବିଷୟ ଅବଗତ କରାଇବେ ଏବଂ ସୂଚନା ଯୋଗାଇ ଦେବା ସକାଶେ ଲୋକ ସୂଚନା ଅଧିକାରୀ ଯେପରି ସହାୟତା ମାଗିବେ ତାହା ଯୋଗାଇ ଦେବା କାର୍ଯ୍ୟାଳୟ ମୁଖ୍ୟଙ୍କର କର୍ତ୍ତବ୍ୟ ଅଟେ ।

(2) ଲୋକ ସୂଚନା ଅଧିକାରୀ ସୂଚନା ଯୋଗାଇ ଦେବା ବାବଦରେ ଗ୍ରହଣ କରିଥିବା ଟଙ୍କାର ସବିସ୍ତାର ବିବରଣୀ ଲିପିବଦ୍ଧ କରିବା ପାଇଁ ଫର୍ମ 'ଛ'ରେ ଏକ ନଗଦ ହିସାବଖାତା ରଖିବେ ଏବଂ ସଂପୃକ୍ତ କାର୍ଯ୍ୟାଳୟ ମୁଖ୍ୟ ସ୍ଥିର କରିବା ମତେ ସେପରି ହିସାବ ଶୀର୍ଷରେ ବା ସେପରି ଅଧିକାରୀଙ୍କ ନାମରେ କୌଣସି ଅନୁସୂଚିତ ବ୍ୟାଙ୍କରେ ଉକ୍ତ ଅର୍ଥ ଜମା ରଖିବେ ।

12. ଖର୍ଚ୍ଚ ଦାଖଲ :- ରାଜ୍ୟ ସୂଚନା ଆୟୋଗଙ୍କ ସମକ୍ଷରେ ସାକ୍ଷୀ ହାଜର କରିବା ବା ଦସ୍ତାବିଜ ଉପସ୍ଥାପନ କରିବା ନିମନ୍ତେ ଯାହା ଖର୍ଚ୍ଚ ହେବ ସେହି ଖର୍ଚ୍ଚ ଯେଉଁ ପକ୍ଷଙ୍କ ନିବେଦନ କ୍ରମେ ସାକ୍ଷୀମାନଙ୍କୁ ହାଜର କରାଯିବ ବା ଦସ୍ତାବିଜ ଉପସ୍ଥାପନ କରାଯିବ ସେହି ପକ୍ଷଙ୍କ ଦ୍ୱାରା ଆୟୋଗଙ୍କ ସମକ୍ଷରେ ଦାଖଲ କରାଯିବ ।

13. ଶାସ୍ତି ପରିମାଣ ବା କ୍ଷତିର ଅସୁଲ :- ଅଧିନିୟମ ଅନୁଯାୟୀ, ପ୍ରଦେୟ କୌଣସି ଶାସ୍ତି ପରିମାଣ ବା କ୍ଷତି ପରିମାଣ ବା ଅନ୍ୟ କୌଣସି ଧନରାଶି, ତାହାର ଆଦାୟ ପାଇଁ ଆଦେଶ ପ୍ରାପ୍ତିର ତିରିଶ ଦିନ ମଧ୍ୟରେ ଯଦି ପ୍ରଦାନ କରାନଯାଏ ବା ଅସୁଲ କରାଯାଇନପାରେ, ତେବେ ବକେୟା ଭୂରାଜସ୍ୱ ଯେପରି ଭାବେ ଆଦାୟ ହୁଏ ସେପରି ଭାବେ ତାହା ଉକ୍ତ ବ୍ୟକ୍ତିଙ୍କଠାରୁ ଆଦାୟ ହେବ ।

(ସଂ-27163-ଆଇ.ପି.ଆର୍.)

ରାଜ୍ୟପାଳଙ୍କ ଆଦେଶକ୍ରମେ

ସ୍ୱା/-

(ଦିଗମ୍ବର ମହାନ୍ତି)

କମିଶନର ତଥା ଶାସନ ସଚିବ ।

---

## ଫର୍ମ - କ

### ନିୟମ 4(1) ଦ୍ରଷ୍ଟବ୍ୟ

### ଅଧିନିୟମର ଧାରା 6(1) ଅନୁଯାୟୀ ସୂଚନା ପାଇଁ ଦରଖାସ୍ତ

**ପ୍ରାପକ,**

**ଲୋକ ସୂଚନା ଅଧିକାରୀ**

**(କାର୍ଯ୍ୟାଳୟର ନାମ ଓ ଠିକଣା)**

1. ଦରଖାସ୍ତକାରୀଙ୍କ ସଂପୂର୍ଣ୍ଣ ନାମ -
2. ପିତା / ସ୍ୱାମୀଙ୍କ ନାମ -
3. ସ୍ଥାୟୀ ଠିକଣା -
4. ଦରଖାସ୍ତକାରୀଙ୍କ ପରିଚୟ ସଂପର୍କିତ ସବିଶେଷ ବିବରଣୀ -

5. **ଆବଶ୍ୟକ ସୂଚନାର ବିଶଦ ବିବରଣୀ**

କ. ସୂଚନାର ବିଷୟବସ୍ତୁ -

ଖ. ଜାଣିବାକୁ ଚାହୁଁଥିବା ସୂଚନାଟି କେଉଁ ସମୟର -

ଗ. ଜାଣିବାକୁ ଚାହୁଁଥିବା ନିର୍ଦ୍ଦିଷ୍ଟ ସୂଚନାର ବିବରଣୀ -

ଘ. ସୂଚନାଟି ବ୍ୟକ୍ତିଗତ ଭାବେ କିମ୍ବା ଡାକଦ୍ୱାରା ନେବାକୁ ଚାହାନ୍ତି -
(ଡାକ ଦ୍ୱାରା ନେଲେ, ଏହି ଖର୍ଚ୍ଚ ଦରଖାସ୍ତକାରୀ ବହନ କରିବେ)

ଙ. ଯଦି ଡାକ ଦ୍ୱାରା ନେବେ ତେବେ ତାହା -
(ସାଧାରଣ ଡାକ କି ରେଜିଷ୍ଟର୍ଡ ପୋଷ୍ଟ କି ସ୍ପିଡ୍‌ପୋଷ୍ଟ)

6. ସୂଚନାଟି ପଠାଇବାର ଠିକଣା ଏବଂ ଏହା କେଉଁ ଆକାରରେ ପଠାଯିବ -

7. ପୂର୍ବରୁ ଏହି ସୂଚନାଟି ପ୍ରଦାନ କରାଯାଇଛି କି -

8. ଏହି ସୂଚନାଟି ସଂପୃକ୍ତ ସରକାରୀ କର୍ତ୍ତୃପକ୍ଷ ସାଧାରଣଭାବେ ଉପଲବ୍ଧ କରାଇନାହାନ୍ତି କି -

9. ଆବଶ୍ୟକ ଫିସ୍ ପ୍ରଦାନ କରିବାକୁ ଆପଣ ପ୍ରସ୍ତୁତ କି -

10. ଆପଣ ଦରଖାସ୍ତ ଫିସ୍ ଦାଖଲ କରିଛନ୍ତି କି -
(ଯଦି 'ହଁ', ତେବେ ଦାଖଲ ସଂପର୍କୀୟ ବିଶଦ୍ ବିବରଣୀ ଦିଅନ୍ତୁ)

11. ଆପଣ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ବର୍ଗର ଅନ୍ତର୍ଭୁକ୍ତ କି, - ଆବଶ୍ୟକ ପ୍ରମାଣପତ୍ର ସଂଲଗ୍ନ କରିଛନ୍ତି କି

**ସ୍ଥାନ :** **ଦରଖାସ୍ତକାରୀଙ୍କ ସଂପୂର୍ଣ୍ଣ ସ୍ୱାକ୍ଷର**
**ତାରିଖ :** **ଠିକଣା**

## ଲୋକ ସୂଚନା ଅଧିକାରୀଙ୍କ କାର୍ଯ୍ୟାଳୟ

**ସୂଚନା ପ୍ରଦାନ ନିମନ୍ତେ**
**ଶ୍ରୀ/ଶ୍ରୀମତୀ/ସୁଶ୍ରୀ** ______________________________
**ଠିକଣା** ______________________________ **ଙ୍କ**
**ଦରଖାସ୍ତ ତା.** ____________________ **ରେ ଗ୍ରହଣ କରାଗଲା ।**

**ସ୍ଥାନ :** **ଲୋକ ସୂଚନା ଅଧିକାରୀଙ୍କ ସଂପୂର୍ଣ୍ଣ ନାମ**
**ତାରିଖ :** **ପଦନାମ ଏବଂ ମୋହର**

## ଫର୍ମ - ଖ

## (ନିୟମ 4(2) ଦ୍ରଷ୍ଟବ୍ୟ)

### ଅର୍ଥ ପ୍ରଦାନ ନିମନ୍ତେ ପତ୍ର

**ପ୍ରେରକ,**

**ଲୋକ ସୂଚନା ଅଧିକାରୀଙ୍କ ନାମ ଓ ପଦନାମ**

**ପ୍ରାପକ,**

**ଦରଖାସ୍ତକାରୀଙ୍କ ନାମ**
**ଠିକଣା**

**ମହାଶୟ,**

_________________________ ସୂଚନା ପାଇଁ ନିମ୍ନସ୍ୱାକ୍ଷରକାରୀଙ୍କୁ ସମ୍ବୋଧିତ ଆପଣଙ୍କ ତା.____________________ ର ଦରଖାସ୍ତ ପ୍ରତି ମୁଁ ଦୃଷ୍ଟି ଆକର୍ଷଣ କରୁଛି । ମୁଁ ଏଠାରେ ଆପଣଙ୍କୁ ସୂଚାଇ ଦେବାକୁ ଚାହେଁ ଯେ ନିମ୍ନସ୍ୱାକ୍ଷରକାରୀ ଆପଣଙ୍କୁ ଆବଶ୍ୟକ ସୂଚନାଟି ଦେବାପାଇଁ, ସୂଚନା ପ୍ରଦାନର ଖର୍ଚ୍ଚ ବାବଦରେ ଆପଣ ନିମ୍ନଲିଖିତ ପରିମାଣର ଅର୍ଥ ଜମା କରିପାରନ୍ତି ।

ଦୟାକରି, ଏହି ପତ୍ର ପାଇବାର ପନ୍ଦର ଦିନ ମଧ୍ୟରେ ଦେୟ ଜମା କରନ୍ତୁ, ନଚେତ୍ ଆପଣଙ୍କ ଆବେଦନପତ୍ର ନାକଚ ହୋଇଯିବ ।

**ଫିସ୍ :**

ଆପଣଙ୍କ ବିଶ୍ୱସ୍ତ

ସ୍ଥାନ :

ତାରିଖ :

ଲୋକ ସୂଚନା ଅଧିକାରୀ
ମୋହର

---

## ଫର୍ମ - ଗ

## (ନିୟମ 5(1) ଓ (2) ଦ୍ରଷ୍ଟବ୍ୟ)

### ଆବେଦନ ନାକଚ ହେବାର ସୂଚନା

**ମହାଶୟ,**

ନିମ୍ନଲିଖିତ କାରଣ ଯୋଗୁଁ, ଆପଣ ଚାହିଁଥିବା ସୂଚନାଟି ପ୍ରଦାନ କରିବାପାଇଁ ନିମ୍ନସ୍ୱାକ୍ଷରକାରୀ ଦୁଃଖର ସହିତ ନିଜର ଅସାମର୍ଥ୍ୟ ପ୍ରକାଶ କରୁଛନ୍ତି -

(1) ଏହା, ଅଧିନିୟମର ଧାରା 8 ଓ 9 ଅନୁଯାୟୀ, ସୂଚନା ପ୍ରଦାନରୁ ସ୍ୱତନ୍ତ୍ର ଭାବେ ଛାଡ଼ ହୋଇଥିବା ଶ୍ରେଣୀର ଅନ୍ତର୍ଗତ ।

(2) ଆପଣଙ୍କ ଦରଖାସ୍ତ ସବୁ ଦୃଷ୍ଟିରୁ ସଂପୂର୍ଣ୍ଣ ନଥିଲା ।

(3) ଆପଣଙ୍କ ପରିଚୟ ସନ୍ତୋଷଜନକ ନୁହେଁ ।

(4) ସର୍ବସାଧାରଣଙ୍କ ପାଇଁ ପ୍ରକାଶିତ ବିଷୟରେ, ଏହି ସୂଚନା ରହିଛି ।

(5) ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ, ଆପଣ ସୂଚନା ପ୍ରଦାନ ଖର୍ଚ୍ଚର ପରିମାଣ ଦାଖଲ କରିନାହାନ୍ତି ।

(6) ଅଧିନିୟମର ଧାରା 24(4) ଅନୁଯାୟୀ, ଆପଣ ଚାହିଁଥିବା ସୂଚନାଟି ପ୍ରଦାନ କରିବା ନିଷେଧ ।

(7) ଏହି ସୂଚନାଟି କୌଣସି ବ୍ୟକ୍ତିଗତ ଗୋପନୀୟତାକୁ ଅଯଥାରେ କ୍ଷୁଣ୍ଣ କରିପାରେ ।

(8) ଆପଣ ଚାହିଁଥିବା ସୂଚନାଟି ଆମର ୱେବସାଇଟ୍ ____________________ ରେ ଉପଲବ୍ଧ । ଆପଣ ଏଥିରୁ ସୂଚନାଟିକୁ ସଂଗ୍ରହ କରିପାରନ୍ତି ।

(9) ଅନ୍ୟ କୌଣସି କାରଣ ପାଇଁ ଦୟାକରି ଅପର ପୃଷ୍ଠା ଦେଖନ୍ତୁ ।

ଆପଣ ଯଦି ଉପରୋକ୍ତ ପ୍ରତ୍ୟାଖାନ ଯୋଗୁଁ ଅସନ୍ତୁଷ୍ଟ ହୁଅନ୍ତି, ତା'ହେଲେ ଏହି ପତ୍ର ପାଇବାର 30 ଦିନ ମଧ୍ୟରେ ____________________ଙ୍କ ନିକଟରେ ଅପିଲ୍ କରିପାରନ୍ତି ।

ସ୍ଥାନ : ଲୋକ ସୂଚନା ଅଧିକାରୀଙ୍କ
ତାରିଖ : ନାମ ଓ ପଦନାମ

ପ୍ରାପକ,

ଶ୍ରୀ/ଶ୍ରୀମତୀ

---

## ଫର୍ମ - ଘ

### (ନିୟମ 7(1) ଦ୍ରଷ୍ଟବ୍ୟ)

### ଅଧିନିୟମର ଧାରା 19(1) ଅନୁଯାୟୀ ପ୍ରଥମ ଅପିଲ୍ କର୍ତ୍ତୃପକ୍ଷଙ୍କ ନିକଟରେ ଅପିଲ୍ କରିବା ନିମନ୍ତେ ସ୍ମାରକପତ୍ରର ଫର୍ମ

**ପ୍ରେରକ,**

(ଦରଖାସ୍ତକାରୀଙ୍କ ନାମ ଓ ଠିକଣା)

**ପ୍ରଥମ ଅପିଲ୍ କର୍ତ୍ତୃପକ୍ଷଙ୍କ ସମକ୍ଷରେ**

1. ଦରଖାସ୍ତକାରୀଙ୍କ ସଂପୂର୍ଣ୍ଣ ନାମ :
2. ଠିକଣା :
3. ଲୋକ ସୂଚନା ଅଧିକାରୀଙ୍କ ସବିଶେଷ ବିବରଣୀ :
4. ଯେଉଁ ଆଦେଶ ବିରୁଦ୍ଧରେ ଅପିଲ୍ କରାଯାଇଛି

   ସେଇ ଆଦେଶର ପ୍ରାପ୍ତି ତାରିଖ :

5. ଅପିଲ୍ କରିବାର ଶେଷ ତାରିଖ :

6. ସୂଚନାର ସବିଶେଷ ବିବରଣୀ :

   (କ) ଆବଶ୍ୟକ ସୂଚନାର ସ୍ୱରୂପ ଓ ବିଷୟବସ୍ତୁ :

   (ଖ) ସୂଚନାଟି ଯେଉଁ କାର୍ଯ୍ୟାଳୟ ବା ବିଭାଗ ସହିତ ସଂପର୍କିତ, ତାହାର ନାମ :

7. ଅପିଲ୍ କରିବାର କାରଣ :

(ଯଦି ଅନ୍ୟ କୌଣସି ବିଷୟ ଉଲ୍ଲେଖ କରିବାର ଥାଏ, ତେବେ ଅନ୍ୟ ଏକ କାଗଜରେ ଲେଖି ସଂଯୋଗ କରନ୍ତୁ)

## ସତ୍ୟାପନ

ମୁଁ ______________________________ (ଆବେଦନକାରୀଙ୍କ ନାମ) ପିତା/ସ୍ୱାମୀ ଶ୍ରୀ ______________________________ ଏତଦ୍ଦ୍ୱାରା ଘୋଷଣା କରୁଅଛି ଯେ ଅପିଲ୍‌ରେ ଦିଆଯାଇଥିବା ସମସ୍ତ ବିବରଣୀ, ମୋର ସର୍ବୋତ୍ତମ ଜ୍ଞାନ ଏବଂ ବିଶ୍ୱାସ ମତେ ସତ୍ୟ ଏବଂ ମୁଁ କୌଣସି ବିଷୟଗତ ସତ୍ୟାସତ୍ୟ ଲୁଚାଇ ନାହିଁ ।

ଅପିଲକାରୀଙ୍କ ସ୍ୱାକ୍ଷର

ସ୍ଥାନ :

ତାରିଖ :

ପ୍ରାପକ,

ଅପିଲ୍ କର୍ତ୍ତୃପକ୍ଷଙ୍କ ନାମ ଓ ଠିକଣା

---

## ଫର୍ମ - ଙ

### (ନିୟମ 7(3) ଦ୍ରଷ୍ଟବ୍ୟ)

### ଅଧିନିୟମର ଧାରା 19(3) ଅନୁଯାୟୀ ଦ୍ୱିତୀୟ ଅପିଲ୍

**ପ୍ରେରକ**

(ଆବେଦନକାରୀଙ୍କ ନାମ ଓ ଠିକଣା)

ପ୍ରାପକ

ରାଜ୍ୟ ସୂଚନା ଆୟୋଗ

1. ଦରଖାସ୍ତକାରୀଙ୍କ ସଂପୂର୍ଣ୍ଣ ନାମ :

2. ଠିକଣା :

3. ପ୍ରଥମ ଅପିଲ୍ କର୍ତ୍ତୃପକ୍ଷଙ୍କ ସବିଶେଷ ବିବରଣୀ :
4. ଯେଉଁ ଆଦେଶ ବିରୁଦ୍ଧରେ ଅପିଲ୍ କରାଯାଇଛି ସେହି ଆଦେଶପ୍ରାପ୍ତିର ତାରିଖ :
5. ଅପିଲ୍ କରିବାର ଶେଷ ତାରିଖ :
6. ସୂଚନାର ସବିଶେଷ ବିବରଣୀ :
   (କ) ଆବଶ୍ୟକ ସୂଚନାର ସ୍ୱରୂପ ଓ ବିଷୟବସ୍ତୁ :
   (ଖ) ସୂଚନାଟି ଯେଉଁ କାର୍ଯ୍ୟାଳୟ ବା ବିଭାଗ ସହିତ ସଂପର୍କିତ ତାହାର ନାମ :
7. ଅପିଲ୍ କରିବାର କାରଣ :
   (ଅନ୍ୟାନ୍ୟ ବିଷୟ, ଏକ ପୃଥକ୍ କାଗଜରେ ଲେଖି ସଂଯୋଗ କରନ୍ତୁ)

**ସତ୍ୟାପନ**

ମୁଁ ________________________________ (ଆବେଦନକାରୀଙ୍କ ନାମ) ପିତା/ସ୍ୱାମୀ ଶ୍ରୀ ________________________________________ ଏତଦ୍ଦ୍ୱାରା ଘୋଷଣା କରୁଅଛି ଯେ ଅପିଲ୍‌ରେ ଦିଆଯାଇଥିବା ସମସ୍ତ ବିବରଣୀ, ମୋର ସର୍ବୋତ୍ତମ ଜ୍ଞାନ ଏବଂ ବିଶ୍ୱାସ ମତେ ସତ୍ୟ ଏବଂ ମୁଁ କୌଣସି ବିଷୟଗତ ସତ୍ୟାସତ୍ୟ ଲୁଚାଇ ନାହିଁ ।

ଅପିଲକାରୀଙ୍କ ସ୍ୱାକ୍ଷର
ସ୍ଥାନ :
ତାରିଖ :

ପ୍ରାପକ,

ଓଡ଼ିଶା ରାଜ୍ୟ ସୂଚନା ଆୟୋଗ

---

## ଫର୍ମ - ଚ
## (ନିୟମ 11(1) ଦ୍ରଷ୍ଟବ୍ୟ)
### ସୂଚନା ରେଜିଷ୍ଟରର ନମୁନା

| କ୍ରମିକ ସଂଖ୍ୟା | ଦରଖାସ୍ତର ତାରିଖ | ସୂଚନା ଚାହୁଁଥିବା ବ୍ୟକ୍ତିଙ୍କ ନାମ | ବ୍ୟକ୍ତିଙ୍କ ଠିକଣା | କି ପ୍ରକାର ସୂଚନା | ସୂଚନା ଚାହୁଁଥିବା ବ୍ୟକ୍ତି ସମସ୍ତ ଔପଚାରିକତା ପାଳନ କରିଛନ୍ତି କି | ଯାହାଙ୍କଠାରୁ ସୂଚନା ସଂଗ୍ରହ କରାଯିବ,ସେହି କର୍ତ୍ତୃପକ୍ଷଙ୍କ ନାମ | ସୂଚନା ପ୍ରଦାନ କରାଯିବାର ତାରିଖ | କେଉଁ ତାରିଖରେ ସଂପୃକ୍ତ କର୍ତ୍ତୃପକ୍ଷ/କର୍ତ୍ତୃପକ୍ଷମାନଙ୍କୁ ଆବଶ୍ୟକ ସୂଚନା ଯୋଗାଇଦେବାପାଇଁ ଅନୁରୋଧ କରାଗଲା |
|---|---|---|---|---|---|---|---|---|
| 1 | 2 | 3 | 4 | 5 | 6 | 7 | 8 | 9 |

| ରିମାଇଣ୍ଡର ପଠାଇବା ତାରିଖ ଓ ସଂଖ୍ୟା | କେଉଁ ତାରିଖରେ ଲୋକ ସୂଚନା ଅଧିକାରୀଙ୍କନିକଟରେ କର୍ତ୍ତୃପକ୍ଷଙ୍କଠାରୁ ସୂଚନା ପହଞ୍ଚିଲା | ସୂଚନା ଚାହୁଁଥିବା ବ୍ୟକ୍ତିଙ୍କୁ କେଉଁ ତାରିଖରେ ସୂଚନା ପ୍ରଦାନ କରାଗଲା | ସୂଚନା ପ୍ରଦାନ ନ କରିବାର ସଂକ୍ଷିପ୍ତ କାରଣ | ମନ୍ତବ୍ୟ |
|---|---|---|---|---|
| 10 | 11 | 12 | 13 | 14 |

## ଫର୍ମ - ଛ
### (ନିୟମ 11(2) ଦ୍ରଷ୍ଟବ୍ୟ)
### ନଗଦ ରେଜିଷ୍ଟର

| ଦରଖାସ୍ତକାରୀଙ୍କ ନାମ ଓ ଠିକଣା | ଦରଖାସ୍ତର ତାରିଖ | ଅର୍ଥ ଦାଖଲ କରିବାର ତାରିଖ | ଫିସ୍‌ର ସବିଶେଷ ବିବରଣୀ ଚାଲାଣ/ବ୍ୟାଙ୍କ ଡ୍ରାଫ୍ଟ/ ନଗଦ | ଫେରସ୍ତ ଯଦିଥାଏ | ମନ୍ତବ୍ୟ |
|---|---|---|---|---|---|
| 1 | 2 | 3 | 4 | 5 | 6 |

## ଅନୁସୂଚୀ
### (ନିୟମ 4 ଓ 7 ଦ୍ରଷ୍ଟବ୍ୟ)
### ସୂଚନା ଯୋଗାଇ ଦେବା ନିମନ୍ତେ ଦାଖଲ କରିବାକୁ ଥିବା ଫିସ୍/ଅର୍ଥର ପରିମାଣ

### ଭାଗ - I

| | | ପରିମାଣ | ଦାଖଲ ପଦ୍ଧତି |
|---|---|---|---|
| | (କ) ଦରଖାସ୍ତ ଫିସ୍ : | | |
| (I) | ସୂଚନା ପାଇବା ନିମନ୍ତେ ଦରଖାସ୍ତ | ପ୍ରତି ଦରଖାସ୍ତକୁ କୋଡ଼ିଏ ଟଙ୍କା | ଟ୍ରେଜରୀ ଚାଲାଣ/ ନଗଦ ଅର୍ଥ |
| (II) | ପ୍ରଥମ ଅପିଲ୍ ନିମନ୍ତେ ଦରଖାସ୍ତ ଫିସ୍ | ଚାଳିଶ ଟଙ୍କା | କୋର୍ଟ ଫି ଷ୍ଟାମ୍ପ |
| (III) | ଦ୍ୱିତୀୟ ଅପିଲ୍ ନିମନ୍ତେ ଦରଖାସ୍ତ ଫିସ୍ | ପଚାଶ ଟଙ୍କା | କୋର୍ଟ ଫି ଷ୍ଟାମ୍ପ |

## ଭାଗ - II

(ଖ) ସୂଚନା ପ୍ରଦାନ ଫିସ୍ :

| | | | |
|---|---|---|---|
| (I) | ନଥିପତ୍ରର ନିରୀକ୍ଷଣ | ପ୍ରତି ଏକ ଘଣ୍ଟା କିମ୍ବା ଏହାର ଅଂଶବିଶେଷ ପାଇଁ ପନ୍ଦର ଟଙ୍କା | ନଗଦ ଅର୍ଥ |
| (II) | A4 ସାଇଜ୍ କାଗଜର ଗୋଟିଏ ପୃଷ୍ଠା ପାଇଁ | | |
| | କ. ପ୍ରତି ଟାଇପ୍/ଜେରକ୍ସ କପି ପିଛା | ପାଞ୍ଚ ଟଙ୍କା | ନଗଦ ଅର୍ଥ |
| | ଖ. କମ୍ପ୍ୟୁଟର ଦ୍ୱାରା ପ୍ରସ୍ତୁତ କପି ପିଛା | ଦଶ ଟଙ୍କା | ନଗଦ ଅର୍ଥ |
| (III) | କଭର ସହିତ ସିଡି | ପ୍ରତ୍ୟେକ ସିଡି ପାଇଁ ଏକ ଶହ ଟଙ୍କା | ନଗଦ ଅର୍ଥ |
| (IV) | ଫ୍ଲପି ଡିସ୍କ (1.44 ଏମ୍.ବି.) | ପ୍ରତ୍ୟେକ ଫ୍ଲପି ପାଇଁ ଏକ ଶହ ଟଙ୍କା | ନଗଦ ଅର୍ଥ |
| (V) | ମାନଚିତ୍ର ଏବଂ ନକ୍ସା | ଶ୍ରମ, ଯନ୍ତ୍ରପାତି ଓ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚକୁ ହିସାବ କରି, ଲୋକ ସୂଚନା ଅଧିକାରୀ ଯଥାର୍ଥ ଦେୟର ପରିମାଣ ସ୍ଥିର କରିବେ | ନଗଦ ଅର୍ଥ |
| (VI) | ଭିଡ଼ିଓ କ୍ୟାସେଟ୍/ମାଇକ୍ରୋଫିଲ୍ମ/ ମାଇକ୍ରୋଫିସ୍ | - ଏଜନ - | ନଗଦ ଅର୍ଥ |
| (VII) | କୌଣସି ଦ୍ରବ୍ୟର ପ୍ରାମାଣିକ ନମୁନା | - ଏଜନ - | ନଗଦ ଅର୍ଥ |

**ବି:ଦ୍ର:** ସମସ୍ତ ଅର୍ଥ ପ୍ରଦାନ କ୍ଷେତ୍ରରେ ଉଚିତ ଓ ଅଧିପ୍ରମାଣିତ ଅର୍ଥ ପ୍ରାପ୍ତି ରସିଦ ପ୍ରଦାନ କରାଯିବ । ଦରଖାସ୍ତ ଫର୍ମ 'କ'ରେ କାର୍ଯ୍ୟାଳୟ ଅର୍ଥ ପ୍ରାପ୍ତି ରସିଦ ସଂଖ୍ୟା ଉଲ୍ଲେଖ କରିବେ ।

-----

# ଓଡ଼ିଶା ସୂଚନା ଅଧିକାର ସଂଶୋଧନ ନିୟମାବଳୀ - 2006

## 29 ମଇ, 2006

ଏସ୍.ଆର୍.ଓ. ସଂ.251/2006 - ସୂଚନା ଅଧିକାର ଅଧିନିୟମ, 2005 (2005ର ଅଧିନିୟମ ସଂ.22)ର ଧାରା-27 ଦ୍ୱାରା ଅର୍ପିତ କ୍ଷମତାର ପ୍ରୟୋଗ କ୍ରମେ, ରାଜ୍ୟ ସରକାର, ଏତଦ୍ୱାରା ଓଡ଼ିଶା ସୂଚନା ଅଧିକାର ନିୟମାବଳୀ-2005କୁ ସଂଶୋଧନ କରିବା ନିମନ୍ତେ ନିମ୍ନଲିଖିତ ନିୟମାବଳୀ ପ୍ରଣୟନ କରିଛନ୍ତି ।

1. ସଂକ୍ଷିପ୍ତ ନାମ ଓ ପ୍ରାରମ୍ଭ -

   1) ଏହି ନିୟମାବଳୀ, ଓଡ଼ିଶା ସୂଚନା ଅଧିକାର (ସଂଶୋଧନ) ନିୟମାବଳୀ, 2006 ଭାବରେ ଅଭିହିତ ହେବ ।

   2) ଓଡ଼ିଶା ଗେଜେଟ୍‌ରେ ପ୍ରକାଶନ ତାରିଖଠାରୁ ଏହା ବଳବତ୍ତର ହେବ ।

2. ଓଡ଼ିଶା ସୂଚନା ଅଧିକାର ନିୟମାବଳୀ, 2005ରେ ଥିବା ନିୟମ-11 ବଦଳରେ ନିମ୍ନଲିଖିତ ନିୟମ ପ୍ରତିସ୍ଥାପିତ ହେବ :-

"11. ରେଜିଷ୍ଟର ରଖିବା -

(1) ଲୋକ ସୂଚନା ଅଧିକାରୀ ତାଙ୍କୁ ମିଳିଥିବା ଦରଖାସ୍ତ ଓ ସେ ଯୋଗାଇ ଦେଇଥିବା ସୂଚନାଗୁଡ଼ିକର ବିସ୍ତୃତ ବିବରଣୀ ଲିପିବଦ୍ଧ କରିବା ପାଇଁ ସେ ଫର୍ମ 'ଟ'ରେ ଏକ ରେଜିଷ୍ଟର ରଖିବେ ଏବଂ ସୂଚନା ଯୋଗାଇ ଦେବା ପରେ ସେ କାର୍ଯ୍ୟାଳୟ ମୁଖ୍ୟଙ୍କୁ ସେ ବିଷୟ ଅବଗତ କରାଇବେ ଏବଂ ସୂଚନା ଯୋଗାଇ ଦେବା ସକାଶେ ଲୋକ ସୂଚନା ଅଧିକାରୀ ଯେପରି ସହାୟତା ମାଗିବେ ତାହା ଯୋଗାଇ ଦେବା କାର୍ଯ୍ୟାଳୟ ମୁଖ୍ୟଙ୍କର କର୍ତ୍ତବ୍ୟ ଅଟେ ଓ ଅଧିନିୟମର ଧାରା-4 (1ଖ) ଅନୁଯାୟୀ ଆଗୁଆ ସୂଚନା ଦେବା କ୍ଷେତ୍ରରେ ଆବଶ୍ୟକମତେ ଉକ୍ତ ରେଜିଷ୍ଟର ଜନସାଧାରଣ ଦେଖିବା ପାଇଁ ସର୍ବଦା ଉନ୍ମୁକ୍ତ ରହିବ ।

(2) ଅଧିନିୟମର ଧାରା-4 ଅନୁଯାୟୀ ଉକ୍ତ କର୍ତ୍ତୃପକ୍ଷଙ୍କ ଦ୍ୱାରା ଆଗୁଆ ଉନ୍ମୋଚିତ ହୋଇଥିବା ସେହିପରି ସୂଚନା ଦେଖିବା କିମ୍ବା ସେପରି ସୂଚନା ପାଇବା ନିମନ୍ତେ ତାହାଙ୍କ କାର୍ଯ୍ୟାଳୟକୁ ଆସିଥିବା ଜନସାଧାରଣଙ୍କର ଦୈନନ୍ଦିନ ରେକର୍ଡ଼ ରଖିବା ପାଇଁ ପ୍ରତ୍ୟେକ ସରକାରୀ କର୍ତ୍ତୃପକ୍ଷ ଗୋଟିଏ ରେଜିଷ୍ଟର ରଖିବେ ।

(3) ଲୋକ ସୂଚନା ଅଧିକାରୀ ସୂଚନା ଯୋଗାଇ ଦେବା ବାବଦରେ ଗ୍ରହଣ କରୁଥିବା ଟଙ୍କାର ସବିସ୍ତାର ବିବରଣୀ ଲିପିବଦ୍ଧ କରିବା ପାଇଁ ଫର୍ମ-'ଛ'ରେ ଏକ ନଗଦ ହିସାବ ଖାତା ରଖିବେ ଏବଂ ସଂପୃକ୍ତ କାର୍ଯ୍ୟାଳୟ ମୁଖ୍ୟ ସ୍ଥିର କରିବାମତେ ସେପରି ହିସାବ ଶୀର୍ଷରେ ବା ସେପରି ଅଧିକାରୀଙ୍କ ନାମରେ କୌଣସି ଅନୁସୂଚିତ ବ୍ୟାଙ୍କରେ ଉକ୍ତ ଅର୍ଥ ଜମା ରଖିବେ ।

3. ଉକ୍ତ ନିୟମାବଳୀର, ଫର୍ମ 'କ'ରେ -

(i) ତାଲିକା 5ର (ଘ)ରେ ଥିବା ତଥ୍ୟ ବଦଳରେ ନିମ୍ନୋକ୍ତ ତଥ୍ୟ ପ୍ରତିସ୍ଥାପିତ ହେବ :-

''(ଘ) ସୂଚନାଟି କିପରି ନେବାକୁ ଚାହାନ୍ତି ?'' ଡାକଦ୍ୱାରା ବ୍ୟକ୍ତିଗତ ଭାବେ / ଇ-ମେଲ୍‌ରେ

(ଡାକ ଦ୍ୱାରା ନେଲେ, ଏହି ଖର୍ଚ୍ଚ ଦରଖାସ୍ତକାରୀ ବହନ କରିବେ); ଏବଂ

(ii) ତାଲିକା 6ରେ ପୂରଣ କରାଯାଇଥିବା ସମସ୍ତ ତଥ୍ୟ ନିମ୍ନୋକ୍ତ ତଥ୍ୟ ବଦଳରେ ନିମ୍ନଲିଖିତ ତଥ୍ୟ ପ୍ରତିସ୍ଥାପିତ ହେବ :-

''6 କେଉଁ ଠିକଣା/ଇ-ମେଲ୍ ଆଇ.ଡି.ରେ ସୂଚନା ପଠାଯିବ ଓ ତାହା କେଉଁ ଆକାରରେ ପଠାଯିବ ।''

4. ଉକ୍ତ ନିୟମାବଳୀରେ ଥିବା ଅନୁସୂଚୀ ବଦଳରେ ନିମ୍ନଲିଖିତ ଅନୁସୂଚୀ ପ୍ରତିସ୍ଥାପିତ ହେବ :-

ଅନୁସୂଚୀ

(ନିୟମ 4 ଓ 7 ଦ୍ରଷ୍ଟବ୍ୟ)

ସୂଚନା ଯୋଗାଇ ଦେବା ନିମନ୍ତେ ଦାଖଲ କରିବାକୁ ଥିବା ଫିସ୍ / ଅର୍ଥର ପରିମାଣ

## ଭାଗ - I

| | ପରିମାଣ | ଦାଖଲ ପଦ୍ଧତି |
|---|---|---|
| **(କ) ଦରଖାସ୍ତ ଫିସ୍ :** | | |
| | (1) | (2) |
| (i) ସୂଚନା ପାଇବା ନିମନ୍ତେ ଦରଖାସ୍ତ ଫିସ୍ | ପ୍ରତି ଦରଖାସ୍ତକୁ ଦଶ ଟଙ୍କା | ଟ୍ରେଜରି ଚାଲାଣ/ନଗଦ ଅର୍ଥ |
| (ii) ପ୍ରଥମ ଅପିଲ୍ ନିମନ୍ତେ ଦରଖାସ୍ତ ଫିସ୍ | କୋଡିଏ ଟଙ୍କା | କୋର୍ଟ ଫି ଷ୍ଟାମ୍ପ |
| (iii) ଦ୍ୱିତୀୟ ଅପିଲ୍ ନିମନ୍ତେ ଦରଖାସ୍ତ ଫିସ୍ | ପଚିଶ ଟଙ୍କା | କୋର୍ଟ ଫି ଷ୍ଟାମ୍ପ |

## ଭାଗ - II

(ଖ) ସୂଚନା ପ୍ରଦାନ ଫିସ୍ :

| | | (1) | (2) |
|---|---|---|---|
| (i) | A4 କିମ୍ବା A3 ସାଇଜ୍ କାଗଜର ଗୋଟିଏ ପୃଷ୍ଠା ନକଲ ପାଇଁ | ପ୍ରତିପୃଷ୍ଠା ପାଇଁ ଦୁଇ ଟଙ୍କା | ନଗଦ ଅର୍ଥ |
| (ii) | A4 କିମ୍ବା A3 ସାଇଜ୍‌ଠାରୁ ବଡ଼ କାଗଜର ଗୋଟିଏ ପୃଷ୍ଠା ନକଲ ପାଇଁ | ଗୋଟିଏ ନକଲର ପ୍ରକୃତ ମୂଲ୍ୟ | ନଗଦ ଅର୍ଥ |
| (iii) | ନଥିପତ୍ର ଦେଖିବା | ପ୍ରଥମ ଘଣ୍ଟା ପାଇଁ କୌଣସି ଫିସ୍ ଦେବାକୁ ପଡ଼ିବ ନାହିଁ ମାତ୍ର ତା'ପରେ ପ୍ରତି 15 ମିନିଟ୍ (କିମ୍ବା ତାହାର ଆଂଶିକ ସମୟ) ପାଇଁ ପାଞ୍ଚ ଟଙ୍କା | ନଗଦ ଅର୍ଥ |
| (iv) | କଭର ସହିତ ସିଡି | ପ୍ରତ୍ୟେକ ସିଡି ପାଇଁ ପଚାଶ ଟଙ୍କା | ନଗଦ ଅର୍ଥ |
| (v) | ଫ୍ଲପି ଡିସ୍କ (1.44 ଏମ୍.ବି.) | ପ୍ରତ୍ୟେକ ଫ୍ଲପି ପାଇଁ ପଚାଶ ଟଙ୍କା | ନଗଦ ଅର୍ଥ |
| (vi) | ମାନଚିତ୍ର ଏବଂ ନକ୍ସା | ଶ୍ରମ, ଉପକରଣ, ଯନ୍ତ୍ରପାତି ଓ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚକୁ ହିସାବ କରି, ଲୋକ ସୂଚନା ଅଧିକାରୀ ଯଥାର୍ଥ ଦେୟର ପରିମାଣ ସ୍ଥିର କରିବେ | ନଗଦ ଅର୍ଥ |
| (vii) | ଭିଡ଼ିଓ କ୍ୟାସେଟ୍/ମାଇକ୍ରୋଫିଲ୍ମ/ ମାଇକ୍ରୋଫିସ୍ | - ଏଜନ - | ନଗଦ ଅର୍ଥ |
| (viii) | ଉପକରଣର ପ୍ରାମାଣିକ ନମୁନା କିମ୍ବା ମଡେଲ | ନମୁନା କିମ୍ବା ମଡେଲର ପ୍ରକୃତ ମୂଲ୍ୟ | ନଗଦ ଅର୍ଥ |
| (ix) | ଛପା ହୋଇଥିବା ଫର୍ମରେ ସୂଚନା | ସେପରି ପ୍ରକାଶନ ନିମନ୍ତେ ନିର୍ଦ୍ଧାରିତ ମୂଲ୍ୟ | ନଗଦ ଅର୍ଥ |

**ବି.ଦ୍ର.-** ସମସ୍ତ ଅର୍ଥ ପ୍ରଦାନ କ୍ଷେତ୍ରରେ ଉଚିତ ଓ ଅଧିପ୍ରମାଣିତ ଅର୍ଥପ୍ରାପ୍ତି ରସିଦ୍ ପ୍ରଦାନ କରାଯିବ । ଦରଖାସ୍ତ ଫର୍ମ 'କ'ରେ କାର୍ଯ୍ୟାଳୟ ଅର୍ଥପ୍ରାପ୍ତି ରସିଦ୍ ସଂଖ୍ୟା ଉଲ୍ଲେଖ କରିବେ ।

**ଟିପ୍ପଣୀ -** ସୂଚନା ଓ ଲୋକ ସଂପର୍କ ବିଭାଗର ଅଧିସୂଚନା ସଂଖ୍ୟା 27163, ତା.1 ଅକ୍ଟୋବର 2005 (ଏସ୍.ଆର୍.ଓ. ସଂଖ୍ୟା 477/2005, 1 ଅକ୍ଟୋବର 2005)ର ଓଡ଼ିଶା ଗେଜେଟ୍‌ରେ ମୂଳ ନିୟମାବଳୀ ପ୍ରକାଶିତ ହୋଇଥିଲା ।

(ସଂଖ୍ୟା- 16076)

ରାଜ୍ୟପାଳଙ୍କ ଆଦେଶକ୍ରମେ

**(ଦିଗମ୍ବର ମହାନ୍ତି)**

କମିଶନର ତଥା ଶାସନ ସଚିବ

---

# ଓଡ଼ିଶା ଖଣି ନିଗମର ପାରାଦ୍ୱୀପ ସିପ୍‌ମେଣ୍ଟ କାର୍ଯ୍ୟାଳୟକୁ ଆଇ.ଏସ୍.ଓ. ପ୍ରମାଣପତ୍ର ମିଳିଲା

ଓଡ଼ିଶା ଖଣି ନିଗମର ପାରାଦ୍ୱୀପ ସିପ୍‌ମେଣ୍ଟ କାର୍ଯ୍ୟାଳୟକୁ ଆଇ.ଏସ୍.ଓ. ପ୍ରମାଣପତ୍ର ନିକଟରେ ପ୍ରାପ୍ତ ହୋଇଛି । ପାରାଦ୍ୱୀପର ଏହି କାର୍ଯ୍ୟାଳୟଟି ଦୈତାରୀ ଲୌହ ପିଣ୍ଡ ପ୍ରକଳ୍ପ ଏବଂ ଦକ୍ଷିଣ କାଳିଆପାଣିର କ୍ରୋମ୍ ପଥର ଉପଯୋଗୀ ପ୍ରକଳ୍ପ ଆଇ.ଏସ୍.ଓ. ପ୍ରମାଣପତ୍ର ପାଇବା ପରେ ତୃତୀୟ କାର୍ଯ୍ୟକ୍ଷମ ୟୁନିଟ୍ ଭାବେ ଏହି ପ୍ରମାଣପତ୍ର ଲାଭ କରିଛି ।

ପାରାଦ୍ୱୀପ ସିପ୍‌ମେଣ୍ଟ କାର୍ଯ୍ୟାଳୟ ଓଡ଼ିଶା ଖଣି ନିଗମର ଉଜ୍ଜ୍ୱଳ ଭବିଷ୍ୟତ ଭାବେ ଏକ ଅତ୍ୟାଧୁନିକ ପରିଚାଳନା ପ୍ରଣାଳୀ ଭାବେ ୯୦୦୧ : ୨୦୦୦ ମାନର ଖଣିଜ ଦ୍ରବ୍ୟ ରପ୍ତାନୀ କାର୍ଯ୍ୟରେ ନିଶ୍ଚିତ ଭାବେ ସହାୟକ ହେବ । ପୂର୍ବରୁ ଓଡ଼ିଶା ଖଣି ନିଗମ ଥ୍ରୀ-ଷ୍ଟାର ରପ୍ତାନୀ ସଂସ୍ଥା ଏବଂ କେପ୍‌ସିଲ ରପ୍ତାନୀ ପୁରସ୍କାର ଲାଭ କରିଛି ।

ଓଡ଼ିଶା ଖଣି ନିଗମର ପାରାଦ୍ୱୀପ ସିପ୍‌ମେଣ୍ଟ କାର୍ଯ୍ୟାଳୟ ମେସର୍ସ ସାର୍ଟିଫିକେଟ୍ ପ୍ରାଇଭେଟ୍ ଲିମିଟେଡ୍ ନାମକ ଏକ ଦିଲ୍ଲୀସ୍ଥିତ ପ୍ରମାଣପତ୍ର ପ୍ରଦାନ ଏଜେନ୍‌ସି ଦ୍ୱାରା ଆଇ.ଏସ୍.ଓ. ୯୦୦୧ : ୨୦୦୦ ମାନ ପ୍ରମାଣପତ୍ର ପ୍ରାପ୍ତ ନିମନ୍ତେ ଯାଞ୍ଚ କରାଯାଇଥିଲା । ସଂପ୍ରତି ଏସିଆର ସର୍ବବୃହତ୍ ଆଧୁନିକ କୌଶଳ ଦକ୍ଷିଣ କାଳିଆପାଣି କ୍ରୋମାଇଟ୍ ଖଣି ଆଇ.ଏସ୍.ଓ. ପ୍ରମାଣପତ୍ର ପାଇବା ନିମନ୍ତେ ପଦକ୍ଷେପ ନିଆଯାଉଛି । ଓଡ଼ିଶା ଖଣି ନିଗମର ଏହି ଆଇ.ଏସ୍.ଓ. ପ୍ରମାଣପତ୍ର ପ୍ରାପ୍ତ ନିଗମର କାର୍ଯ୍ୟଦକ୍ଷତା ଏବଂ ଉତ୍ତମ ଗୁଣବତ୍ତାର ପରିଚୟ ପ୍ରଦାନ କରୁଛି ।

# ସୂଚନା ଅଧିକାର ସଂପର୍କିତ କେତୋଟି ପ୍ରଶ୍ନର ଉତ୍ତର

**୧. ପ୍ର.: ସୂଚନା ଅଧିକାର ଆଇନ କେବେଠାରୁ ଲାଗୁ ହେଲା ?**

ଉ.: ସୂଚନା ଅଧିକାର ଆଇନ କେନ୍ଦ୍ର ସରକାରଙ୍କ ଦ୍ୱାରା ପ୍ରଣୀତ ହେଲା । ଜୁନ୍ ମାସ ୧୫ ତାରିଖ ୨୦୦୫ରେ ଆଇନ୍‌ଟି ରାଷ୍ଟ୍ରପତିଙ୍କ ସ୍ୱୀକୃତି ଲାଭ କଲା । ସେହିଦିନଠାରୁ ଆଇନର କେତେକ ଧାରା ଲାଗୁ ହେଲା କିନ୍ତୁ ତା'ର ୧୨୦ ଦିନ ପରେ ଅର୍ଥାତ୍ ଅକ୍ଟୋବର ୧୨ ତାରିଖ ୨୦୦୫ ମସିହାଠାରୁ ଜାମ୍ମୁ ଓ କାଶ୍ମୀର ରାଜ୍ୟକୁ ଛାଡି ଭାରତର ସମସ୍ତ ରାଜ୍ୟରେ ଏହି ଆଇନ୍‌ର ସମସ୍ତ ଧାରା ଲାଗୁ ହେଲା ।

**୨. ପ୍ର.: ଏହି ଆଇନର ମୁଖ୍ୟ ଉଦ୍ଦେଶ୍ୟ କ'ଣ ?**

ଏହି ଆଇନ୍‌ର ମୁଖବନ୍ଧରେ ମୁଖ୍ୟତଃ ୩ଟି ବିଷୟରେ ଉଲ୍ଲେଖ କରାଯାଇଛି । ଆଇନ୍‌ର ଅସଲ ଉଦ୍ଦେଶ୍ୟଗୁଡିକ ହେଲା ସରକାରଙ୍କର ତଥା ଅନ୍ୟ ସମସ୍ତ କର୍ତ୍ତୃପକ୍ଷଙ୍କର କାର୍ଯ୍ୟାବଳୀକୁ ସୂଚନା ମାଧ୍ୟମରେ ଲୁଚାଛପା ନରଖି ସ୍ୱଚ୍ଛ କରିବା ।

ଦ୍ୱିତୀୟ ଉଦ୍ଦେଶ୍ୟ ହେଲା ସେମାନଙ୍କର ସମସ୍ତ କାର୍ଯ୍ୟାବଳୀ ପାଇଁ ସେମାନେ ଉତ୍ତରଦାୟୀ ରହିବେ । ଅର୍ଥାତ୍ ଯଦି ଜଣେ କର୍ମଚାରୀ କାର୍ଯ୍ୟରେ ଅବହେଳା କଲେ ତେବେ ସେଥିପାଇଁ ସେ ନିଜେ ଉତ୍ତରଦାୟୀ ରହିବେ । ଏହି ଆଇନର ତୃତୀୟ ଉଦ୍ଦେଶ୍ୟ ହେଲା ସମାଜରୁ ତଥା ଦେଶରୁ ଦୁର୍ନୀତିକୁ ପ୍ରତିହତ କରିବା ।

**୩. ପ୍ର.: ଭାରତ ବ୍ୟତୀତ ଏଭଳି ଆଇନ୍ ପୃଥିବୀର ଅନ୍ୟ କୌଣସି ଦେଶରେ ଅଛି କି ?**

ଉ.: ସୂଚନା ଅଧିକାର ଆଇନ୍ ଭଳି ଆଇନ୍ ପୃଥିବୀର ପାଖାପାଖି ୫୦ଟି ଦେଶରେ ରହିଛି । ପ୍ରଥମେ ସ୍ୱିଡେନ୍‌ରେ ୧୭୬୬ ମସିହାରେ ଏହିଭଳି ଆଇନ ପ୍ରଣୀତ ହୋଇଥିଲା, ତା'ର ୨୦୦ ବର୍ଷ ପରେ ଅର୍ଥାତ୍ ୧୯୬୬ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାରେ ଏଭଳି ଆଇନ ପ୍ରଣୟନ ହେଲା । ତାପରଠାରୁ ବିଭିନ୍ନ ଦେଶରେ ଏହିଭଳି ଆଇନ ପ୍ରଣୟନ ହୋଇଛି ।

ଆମର ପଡ଼ୋଶୀ ଦେଶ ବାଂଲାଦେଶ କିମ୍ବା ପାକିସ୍ଥାନରେ ଏଭଳି ଆଇନ ୨୦୦୫ ମସିହା ସୁଦ୍ଧା ପ୍ରଣୟନ ହୋଇନାହିଁ ।

**୪. ପ୍ର.: ସୂଚନା ଅଧିକାର ଆଇନ ବଳରେ କେଉଁମାନେ ସୂଚନା ପାଇପାରିବେ ?**

ଉ.: ଭାରତର ସୂଚନା ଅଧିକାର ଆଇନ-୨୦୦୫ ବଳରେ କେବଳ ଭାରତୀୟ ନାଗରିକମାନେ ହିଁ ସୂଚନା ପାଇପାରିବେ । ଏହି କାରଣ ଯୋଗୁଁ କୌଣସି କମ୍ପାନୀର ମ୍ୟାନେଜର ବା କୌଣସି ସ୍ୱେଚ୍ଛାସେବୀ ଅନୁଷ୍ଠାନର କର୍ମକର୍ତ୍ତା ଏହି ଆଇନ୍ ବଳରେ ସୂଚନା ପାଇବା ପାଇଁ ହକ୍‌ଦାର ନୁହନ୍ତି । କିନ୍ତୁ ବ୍ୟକ୍ତିଗତ ଓ ନାଗରିକଭାବେ ସେମାନେ ଦରଖାସ୍ତ ଦେଇ ସୂଚନା ପାଇ ପାରିବେ ।

**୫. ପ୍ର.: ଏହି ଆଇନ ଅନୁଯାୟୀ ସୂଚନା କହିଲେ କ'ଣ ବୁଝାଯାଏ ?**

ଉ.: ସୂଚନା କହିଲେ ରେକର୍ଡ, ନଥିପତ୍ର, ଅନ୍ୟାନ୍ୟ ଦଲିଲ, ମତାମତ, ପରାମର୍ଶ, ପ୍ରେସ ଇସ୍ତାହାର, ନିର୍ଦ୍ଦେଶାବଳୀ, ରିପୋର୍ଟ, ସାମ୍ପୁଲ୍, ମଡେଲ, ହାକିମମାନଙ୍କର ଗାଡିର ଲଗବୁକ୍, କଣ୍ଟ୍ରାକ୍ଟ, ଇ-ମେଲ୍, କମ୍ପ୍ୟୁଟର, ଫ୍ଲପି, ସିଡି ଇତ୍ୟାଦିରେ ଥିବା

ତଥ୍ୟାବଳୀକୁ ବୁଝାଯାଏ । ଏହା ସହିତ ବେସରକାରୀ ସଂସ୍ଥା ସଂବନ୍ଧରେ ଯେଉଁ ଯେଉଁ ତଥ୍ୟ ସବୁ ପ୍ରଚଳିତ ଥିବା ଅନ୍ୟାନ୍ୟ ଆଇନ୍ ଦ୍ୱାରା କେନ୍ଦ୍ର ଓ ରାଜ୍ୟସରକାରଙ୍କର ବିଭିନ୍ନ ବିଭାଗ ପାଇବାକୁ ହକ୍‌ଦାର ସେସବୁକୁ ମଧ୍ୟ ସୂଚନା ବୋଲି ଧରାଯିବ ।

**୬. ପ୍ର.: ସୂଚନା ଅଧିକାର କହିଲେ କ'ଣ ବୁଝାଯିବ ?**

ଉ.: (କ) ଏହି ଅଧିକାର ଅନୁଯାୟୀ ନାଗରିକମାନେ ବିଭିନ୍ନ କାର୍ଯ୍ୟ ଯଥା ରାସ୍ତା, ପୋଲ ଇତ୍ୟାଦି ତିଆରି ସମ୍ବନ୍ଧୀୟ ଫାଇଲ୍ ଏବଂ ଅନ୍ୟାନ୍ୟ ଦଲିଲ୍‌ପତ୍ର ଦେଖିପାରିବେ ଓ ତଦାରଖ କରିପାରିବେ ।

(ଖ) ଫାଇଲ୍, ବିଭିନ୍ନ ଦଲିଲ୍ ଓ କାଗଜପତ୍ରରୁ ଦେଖି ସେଥିରୁ ଉତାରି ପାରିବେ ବା ତା'ର ଅବିକଳ ନକଲ ନେଇ ପାରିବେ ।

(ଗ) ଘର / ପୋଲ ଇତ୍ୟାଦି ତିଆରିରେ ବ୍ୟବହୃତ ସାମଗ୍ରୀ ଯଥା ସିମେଣ୍ଟର ନମୁନା ନେଇପାରିବେ । ସେହିଭଳି କାଠ ଓ ଅନ୍ୟାନ୍ୟ ସାମଗ୍ରୀର ନମୁନା ନେଇପାରିବେ ।

(ଘ) କାଗଜପତ୍ରର ଫଟୋକପି ବା କମ୍ପ୍ୟୁଟର ପ୍ରିଣ୍ଟଆଉଟ୍, ଟେପ୍, ଭିଡିଓ କ୍ୟାସେଟ୍, ଫ୍ଲପି ଓ ଡିସ୍କେଟ୍ ଇତ୍ୟାଦି ଜରିଆରେ ସୂଚନା ପାଇପାରିବେ ।

**୭. ପ୍ର.: ସୂଚନା କିଏ ଦେବେ ?**

ଉ.: ପ୍ରତ୍ୟେକ କାର୍ଯ୍ୟାଳୟରେ ଅତି କମ୍‌ରେ ଜଣେ ସହକାରୀ ଲୋକ ସୂଚନା ଅଧିକାରୀ ବା ଏ.ପି.ଆଇ.ଓ. ତଥା ଜଣେ ଲୋକ ସୂଚନା ଅଧିକାରୀ ବା ପି.ଆଇ.ଓ. ରହିବେ । ଏଣିକି ତାଙ୍କୁ ଆମେ କେବଳ ଲୋକ ସୂଚନା ଅଧିକାରୀ କହିବା । ସହକାରୀ ଲୋକ ସୂଚନା ଅଧିକାରୀଙ୍କର କାମ ହେଲା ସେ ସୂଚନା ପାଇଁ ଉଦ୍ଦିଷ୍ଟ ଫର୍ମ ଗ୍ରହଣ କରି ଅତି ବେଶିରେ ୫ଦିନ ମଧ୍ୟରେ ଲୋକ ସୂଚନା ଅଧିକାରୀଙ୍କ ନିକଟକୁ ଫର୍ମଟି ପଠାଇଦେବେ । ସୂଚନା ଦେବାପାଇଁ ସେ ଦରଖାସ୍ତ ଗ୍ରହଣ କରିବେ ଓ ସୂଚନା ଦେବାପାଇଁ ସେ ଦାୟୀ ରହିବେ ।

ଉକ୍ତ ଲୋକ ସୂଚନା ଅଧିକାରୀ ଅଲଗା ଭାବରେ ନିଯୁକ୍ତି ହେବେ ନାହିଁ । କାର୍ଯ୍ୟାଳୟରେ କାମ କରୁଥିବା ଲୋକମାନଙ୍କ ମଧ୍ୟରୁ ସହକାରୀ ଲୋକ ସୂଚନା ଅଧିକାରୀ ତଥା ଲୋକ ସୂଚନା ଅଧିକାରୀଙ୍କ ନାମରେ ନାମିତ କରାଯିବ । ସେ ଲୋକ ସୂଚନା ଅଧିକାରୀ ସୂଚନା ସଂଗ୍ରହ କଲାବେଳେ ତାଙ୍କ ଅଫିସର ଯେଉଁ ଯେଉଁ ବ୍ୟକ୍ତିମାନଙ୍କଠାରୁ କାଗଜପତ୍ର ବା ସୂଚନା ମାଗିବେ ସେମାନଙ୍କୁ ସେହି ଦରଖାସ୍ତ ପାଇଁ ଲୋକ ସୂଚନା ଅଧିକାରୀ ରୂପରେ ବିଚାର କରାଯିବ ।

**୮. ପ୍ର.: କେଉଁ କେଉଁ ଲୋକ କର୍ତ୍ତୃପକ୍ଷଙ୍କୁ ସୂଚନା ଦେବାକୁ ପଡିବ ?**

ଉ.: ଏଣିକି ଲୋକ କର୍ତ୍ତୃପକ୍ଷ ନକହି ଆମେ କେବଳ କର୍ତ୍ତୃପକ୍ଷ ବୋଲି କହିବା । କର୍ତ୍ତୃପକ୍ଷର ଅର୍ଥ ହେଲା ଯେତକ ପ୍ରତିଷ୍ଠାନ ବା ସ୍ୱାୟତ୍ତ ଶାସନ ସଂସ୍ଥା :

(କ) ସମ୍ବିଧାନ ଦ୍ୱାରା ପ୍ରତିଷ୍ଠିତ ହୋଇଥିବ ।

(ଖ) ଲୋକସଭା ଦ୍ୱାରା ପ୍ରଣୀତ ଯେକୌଣସି ଆଇନ ଦ୍ୱାରା ପ୍ରତିଷ୍ଠିତ ହୋଇଥିବ ।

(ଗ) ବିଧାନସଭା ଦ୍ୱାରା ପ୍ରଣୀତ କୌଣସି ଆଇନ ଦ୍ୱାରା ପ୍ରତିଷ୍ଠିତ ହୋଇଥିବ ।

(ଘ) ସରକାରଙ୍କର ଆଦେଶ ବା କୌଣସି ନୋଟିଫିକେସନ୍ ବଳରେ ପ୍ରତିଷ୍ଠିତ ହୋଇଥିବ ।

(ଙ) କୌଣସି ସଂସ୍ଥା ମୁଖ୍ୟତଃ ସରକାରଙ୍କ ଦ୍ୱାରା ପରିଚାଳିତ ବା ଆର୍ଥିକ ଅନୁଦାନ ପ୍ରାପ୍ତ ହୋଇଥିବ ଏବଂ

ପ୍ରତ୍ୟକ୍ଷ ବା ପରୋକ୍ଷରେ ହେଉ କୌଣସି ବେସରକାରୀ ସଂସ୍ଥା ବା ସ୍ୱେଚ୍ଛାସେବୀ ଅନୁଷ୍ଠାନ ସରକାରୀ ଅନୁଦାନ ପାଉଥିବେ । ଏ ସମସ୍ତଙ୍କୁ ଲୋକକର୍ତ୍ତୃପକ୍ଷ ବା କର୍ତ୍ତୃପକ୍ଷ କୁହାଯିବ । ସରଳଭାବେ କହିଲେ ପଞ୍ଚାୟତଠାରୁ ପାର୍ଲିଆମେଣ୍ଟ ଯାଏଁ, ମୁନସିଫ୍

କୋର୍ଟଠାରୁ ସୁପ୍ରିମ୍ କୋର୍ଟ ଯାଏଁ, ଆର.ଆଇ. ଅଫିସ୍‌ଠାରୁ ପ୍ରଧାନମନ୍ତ୍ରୀ ବା ରାଷ୍ଟ୍ରପତିଙ୍କ କାର୍ଯ୍ୟାଳୟ ଯାଏଁ, ଉଚ୍ଚ ପ୍ରାଥମିକ ବିଦ୍ୟାଳୟଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଏହାର ପରିସୀମା ପରିବ୍ୟାପ୍ତ । ଏହା ବ୍ୟତୀତ ରାଜ୍ୟ ଖଣି ନିଗମ, ଜୀବନବୀମାକାରୀ ସଂସ୍ଥା, ମାଧ୍ୟମିକ ଶିକ୍ଷା ପରିଷଦ ଓ ବିଦ୍ୟୁତ୍ ବଣ୍ଟନ କରୁଥିବା କମ୍ପାନୀ ଇତ୍ୟାଦି ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ସମସ୍ତ ସଂସ୍ଥା ସୂଚନା ଅଧିକାର ଆଇନ୍‌ର ଅନ୍ତର୍ଭୁକ୍ତ ।

**୯. ପ୍ର. ଏ ଆଇନ୍‌ରେ ପ୍ରତ୍ୟେକ ଅଫିସ୍ ନିଜ ଆଡୁ ସ୍ୱତଃପ୍ରବୃତ୍ତ ହୋଇ ସୂଚନା ଦେବାର ବ୍ୟବସ୍ଥା ଅଛି କି?**

ଉ. ଆଇନ୍‌ର ୪ର୍ଥ ଧାରାରେ ପ୍ରତ୍ୟେକ ଅଫିସ୍ ନିଜ ଆଡୁ କେତେକ ସୂଚନା ଦେବା ପାଇଁ ନିର୍ଦ୍ଦେଶ ରହିଛି । ସମସ୍ତ ରେକର୍ଡ ଓ ଫାଇଲ୍‌ର ତାଲିକା ପ୍ରସ୍ତୁତ କରିବା ସହ ୧୭ପ୍ରକାର ସୂଚନା ସ୍ୱତଃପ୍ରବୃତ୍ତ ହୋଇ ପ୍ରତ୍ୟେକ ଅଫିସ୍ ଦେବା ପାଇଁ କୁହାଯାଇଛି । ସେହି ସୂଚନାଗୁଡିକ ଜିଲ୍ଲା ୱେବ୍‌ସାଇଟ୍‌ରେ ରହିବା ସହ ଅଫିସ୍‌ରେ ଲୋକ ସୂଚନା ଅଧିକାରୀଙ୍କର ଟେବୁଲ୍ ଉପରେ ଲିଖିତ ଭାବରେ ରହିବ, ଯାହାକୁ କି ଯେକୌଣସି ନାଗରିକ ଯାଇ ଦେଖିପାରିବେ ଓ ଦେଖିବା ପାଇଁ କେଣସି ପଇସା ପଡିବ ନାହିଁ ।

**୧୦.ପ୍ର. ସେହି ସୂଚନାଗୁଡିକ କ'ଣ ?**

ଉ. ପ୍ରତ୍ୟେକ ଅଫିସ୍ କେଉଁ ଉଦ୍ଦେଶ୍ୟ ସାଧନ ପାଇଁ ପ୍ରତିଷ୍ଠିତ ହୋଇଛି, ମୁଖ୍ୟ ଲକ୍ଷ୍ୟ କ'ଣ ଓ କିପରି ସେସବୁ ପୂରଣ କରିବାକୁ ଯାଉଛି ସେ ବିଷୟରେ ଉଲ୍ଲେଖ କରିବେ ।

ଅଫିସ୍‌ର ମୁଖ୍ୟ କିଏ, ତାଙ୍କ ପାଖରେ କେତେଜଣ କାମ କରୁଛନ୍ତି, ପ୍ରତ୍ୟେକ ଲୋକଙ୍କର କର୍ତ୍ତବ୍ୟ ଓ ଦାୟିତ୍ୱ ସବୁ କ'ଣ, କିଏ କେଉଁ ଫାଇଲ୍ ଦାୟିତ୍ୱରେ ଅଛନ୍ତି, ପ୍ରତ୍ୟେକ କେତେ ଦରମା ଓ ଭତ୍ତା ଇତ୍ୟାଦି ପାଆନ୍ତି ଏ ସୂଚନାସବୁ ରହିବ । ତାହା ସହ ଅଫିସ୍‌ରେ କାର୍ଯ୍ୟ ସୂଚାରୁରୂପେ ତୁଲାଇବା ପାଇଁ କିଛି କମିଟି, ଗଭର୍ଣ୍ଣିବଡି ଇତ୍ୟାଦି ଅଛି କି, ଯଦି ଥାଏ ତାହା ହେଲେ ସେଭଳି କମିଟି ବା ଗଭର୍ଣ୍ଣିବଡି ଇତ୍ୟାଦିର କାର୍ଯ୍ୟପ୍ରଣାଳୀ ଓ କେଉଁଭଳି ନିଷ୍ପତ୍ତି ନେଉଛନ୍ତି ଇତ୍ୟାଦି ଲେଖା ରହିବ ।

ଅଫିସ୍ ତରଫରୁ ଯଦି କିଛି ସବ୍‌ସିଡି ବା ସାହାଯ୍ୟ ବା ଅନୁଦାନ ଇତ୍ୟାଦି ବ୍ୟବସ୍ଥା ଅଛି, ତେବେ ସେସବୁ ଦେବାରେ କ'ଣ ନୀତିନିୟମ ରହିଛି ଓ ଯେଉଁମାନେ ଏସବୁ ସୁବିଧା ପାଇଛନ୍ତି, ସେମାନଙ୍କର ତାଲିକା ଦେବାକୁ ହେବ ।

ଅଫିସ୍‌ର କେଉଁ କେଉଁ କାର୍ଯ୍ୟପାଇଁ ବଜେଟ୍‌ରେ କେତେ ଅଟକଳ ଅଛି ଓ ବଜେଟ୍‌ରେ ଥିବା ଅର୍ଥକୁ କିପରି ଖର୍ଚ୍ଚ କରାଯିବ ତାହାର ବିବରଣୀ ରହିବ ।

ଅଫିସ୍‌ର କାର୍ଯ୍ୟରେ ଜନସାଧାରଣଙ୍କର ସହଯୋଗ ପାଇଁ କିକି ବ୍ୟବସ୍ଥା ଅଛି ଉଲ୍ଲେଖ କରାଯିବ । ଏସବୁ ସହ ଅଫିସ୍‌ର ପ୍ରତ୍ୟେକ କର୍ମଚାରୀ ନିଜ ନିଜର କର୍ତ୍ତବ୍ୟ ସମ୍ପାଦନ କରିବା ପାଇଁ କି କି ନିୟମକାନୁନ୍ ମାନିବେ ସେ ସମ୍ପର୍କରେ ଥିବା ସମସ୍ତ ନିର୍ଦ୍ଦେଶାବଳୀ ଉଲ୍ଲେଖ କରାଯିବ । ସବୁଠାରୁ ବଡ କଥା ହେଲା ଅଫିସର ପ୍ରତ୍ୟେକ କର୍ମଚାରୀ କେଉଁ କାମ ପାଇଁ କେତେଦିନ ନେବେ ଓ ସେତିକି ଦିନ ଭିତରେ ତାକୁ ସେ କାମ ସାରିବାକୁ ହେବ ଏବଂ ନସାରିପାରିଲେ ତାଙ୍କ ପାଇଁ କି ଦଣ୍ଡ ବ୍ୟବସ୍ଥା ରହିଛି ସେକଥା ଉଲ୍ଲେଖ ରହିବ ।

ଏ ସମସ୍ତ ସୂଚନାକୁ ଆବଶ୍ୟକମତେ ମଝିରେ ମଝିରେ ପରିବର୍ତ୍ତନ କରିବାକୁ ହେବ ଓ ସର୍ବଶେଷ ତଥ୍ୟ ଦେବାକୁ ପଡିବ ।

**୧୧.ପ୍ର. ୧୯୨୩ ମସିହାରେ ସରକାରୀ ଗୋପନୀୟତା ଆଇନ୍‌ରେ ସରକାରୀ ତଥ୍ୟ ଦେବାରେ ବାରଣ କରାଯାଇଛି । ସେ ଆଇନ୍ ବାତିଲ୍ ହୋଇଛି କି? ଯଦି ବାତିଲ୍ ହୋଇ ନଥାଏ ତେବେ ସେଥିରେ ସୂଚନା ଦେବାପାଇଁ ଥିବା ପ୍ରତିବନ୍ଧକ ଲାଗୁ ହେବ ନାହିଁକି ?**

ଉ. ଏ ଆଇନ୍‌ରେ କୁହାଗଲାଯେ ୧୯୨୩ ମସିହାର ସରକାରୀ ଗୋପନୀୟତା ଅଧିନିୟମରେ ଯାହା ଯାହା ବାରଣ ଥାଉନା କାହିଁକି ବା ଅନ୍ୟ କୌଣସି ଆଇନ୍ ବା ନିୟମରେ ଯାହା କିଛି ବାରଣ ଥାଉନା କାହିଁକି ସେସବୁ ଆଉ ଲାଗୁ ହେବ ନାହିଁ । ଏ ଆଇନ୍‌ରେ ଥିବା ବାରଣ ସମ୍ପର୍କୀୟ ବ୍ୟବସ୍ଥା ବ୍ୟତୀତ ଅନ୍ୟକୌଣସି କଟକଣା ରହିବ ନାହିଁ । ତେଣୁ ୧୯୨୩ମସିହାର

ସରକାରୀ ଗୋପନୀୟତା ଅଧିନିୟମ ବିଧିବଦ୍ଧ ଭାବେ ବାତିଲ୍ ନହୋଇଥିଲେ ମଧ୍ୟ ବସ୍ତୁତଃ ତାର ବ୍ୟବସ୍ଥାଗୁଡିକ ଲାଗୁ ହେବ ନାହିଁ ।

**୧୨.ପ୍ର.: ସୂଚନା ପାଇବାକୁ ହେଲେ କେମିତି ଦରଖାସ୍ତ କରିବାକୁ ହେବ ?**

ଉ.: ଲୋକ ସୂଚନା ଅଧିକାରୀଙ୍କ ନିକଟରେ ନିର୍ଦ୍ଧାରିତ ଫର୍ମରେ ଓଡ଼ିଆ, ହିନ୍ଦୀ ବା ଇଂରାଜୀରେ କ'ଣ ସୂଚନା ପାଇବାକୁ ଚାହୁଁଛନ୍ତି ଠିକ୍ ଓ ସ୍ପଷ୍ଟ ଭାବେ ଲେଖି ଦରଖାସ୍ତ ଦେବାକୁ ହେବ । ବି.ପି.ଏଲ୍. ପରିବାର ପାଇଁ ଦରଖାସ୍ତ କରିବା ପାଇଁ ଫିସ୍ ଦେବାକୁ ପଡିବ ନାହିଁ, ଅନ୍ୟମାନଙ୍କ ପାଇଁ ୧୦ଟଙ୍କା ଫିସ୍ ରଖାଯାଇଛି । ଏହି ଅର୍ଥକୁ ନଗଦ ଆକାରରେ ବା ଟ୍ରେଜେରି ଚାଲାଣ ଜରିଆରେ ଦେବାକୁ ପଡ଼ିବ । ବ୍ୟକ୍ତିଗତ ଭାବରେ ଦରଖାସ୍ତ ଲୋକ ସୂଚନା ଅଧିକାରୀଙ୍କୁ ଦେଇ ହେବ ବା ତାକୁ ଡାକରେ ପଠାଇ ହେବ ବା ଇ-ମେଲ୍ ଦ୍ୱାରା ମଧ୍ୟ ପଠାଇ ହେବ ।

ଦରଖାସ୍ତ ଦେଲାବେଳେ ଦରଖାସ୍ତକାରୀ ଜଣେ ଭାରତୀୟ ନାଗରିକ ବୋଲି ପ୍ରମାଣ ଦେବାକୁ ପଡିବ । ଯଦି ବି.ପି.ଏଲ୍. ପରିବାର ହୋଇଥିବେ ତେବେ ତାର ପ୍ରମାଣ ଦେବାକୁ ହେବ ।

ସୂଚନା ମାଗିଲା ବେଳେ ସୂଚନା କାହିଁକି ମାଗୁଛନ୍ତି ବା ସୂଚନା ନେଇ କ'ଣ କରିବେ - ଏଭଳି ପ୍ରଶ୍ନ କର୍ତ୍ତୃପକ୍ଷ ପଚାରି ପାରିବେ ନାହିଁ ।

**୧୩. ପ୍ର. ଗୋଟିଏ ଦରଖାସ୍ତ ଫର୍ମରେ କେତୋଟି ସୂଚନା ପଚରାଯାଇ ପାରିବ ?**

ଉ.: ଆଇନ୍‌ରେ ସେଭଳି କିଛି ଉଲ୍ଲେଖ କରାଯାଇ ନାହିଁ । ଗୋଟିଏ ଅଫିସ୍ ସହ ସଂପୃକ୍ତ ଓ ଗୋଟିଏ ବିଷୟରେ ସଂପୃକ୍ତ ସମସ୍ତ ଆବଶ୍ୟକୀୟ ସୂଚନା ମାଗିହେବ ।

**୧୪. ପ୍ର. କେତେ ବର୍ଷତଳର ସୂଚନା ମାଗିହେବ ?**

ଉ. ସେ ବିଷୟରେ ମଧ୍ୟ ଆଇନ୍‌ରେ କିଛି ଲେଖା ଯାଇ ନାହିଁ । ତେବେ ଯେତେ ପୁରୁଣା ହେଲେମଧ ଯଦି ଅଫିସ୍‌ରେ ତଥ୍ୟ ଅଛି ଓ ଦେବା ଅବସ୍ଥାରେ ଅଛି ତାହାହେଲେ ଦେବାରେ ଅସୁବିଧା ନାହିଁ ।

**୧୫. ପ୍ର.: ଓଡ଼ିଶାରେ କେତେ ପାତିମାଙ୍କଡ ବା କାଉ ବା ବୁଲା କୁକୁର ଅଛନ୍ତି ସେଭଳି ସୂଚନା ଚାହିଁଲେ ମିଳିବକି?**

ଉ. ସେଭଳି ସୂଚନା ଚାହିଁଲେ ଦରଖାସ୍ତ ନାମଞ୍ଜୁର ହେବ ।

**୧୬.ପ୍ର: କେତେ ସମୟ ଭିତରେ ସୂଚନା ମିଳିବ ?**

ଉ. ଦରଖାସ୍ତ ଦେବାର ୩୦ ଦିନ ମଧ୍ୟରେ ସୂଚନା ଦେବାକୁ ପଡିବ ।

(କ) ସୂଚନାଟି ଯଦି କୌଣସି ବ୍ୟକ୍ତିବିଶେଷଙ୍କର ଜୀବନ ବା ସ୍ୱାଧୀନତା ସମ୍ବନ୍ଧୀୟ ହୋଇଥାଏ ତେବେ ସେ କ୍ଷେତ୍ରରେ ୪୮ଘଣ୍ଟା ମଧ୍ୟରେ ସୂଚନା ଦେବାକୁ ପଡିବ ।

(ଖ) ଯଦି ସହକାରୀ ଲୋକ ସୂଚନା ଅଧିକାରୀଙ୍କୁ ଦରଖାସ୍ତ ଦିଆଯାଇଥିବ ତେବେ ଆଉ ଅଧିକ ୫ଦିନ ସମୟ ଲାଗିବ ।

(ଗ) ଯଦି କୌଣସି ତୃତୀୟ ପକ୍ଷଠାରୁ ସୂଚନା ସଂଗ୍ରହ କରିବାକୁ ଥିବ ତାହା ହେଲେ ଅଧିକ ୧୦ ଦିନ ବା ସର୍ବମୋଟ୍ ୪୦ ଦିନ ଲାଗିବ ।

(ଘ) ଏହି ସବୁ ଦିନ ଭିତରେ ସୂଚନା ନ ପାଇଲେ ଲୋକ ସୂଚନା ଅଧିକାରୀ ସୂଚନା ଦେବାକୁ ମନା କଲେ ବୋଲି ଧରିବାକୁ ହେବ ।

(ଙ) ଆଉ ଗୋଟିଏ କଥା ମନେ ରଖିବାକୁ ହେବ । ସୂଚନା ପାଇବାକୁ ଗଲାବେଳେ ଯଦି ଆମେ କାହାର ସଇ, ମୋହର ନକଲ, ଫଟୋକପି ବା ସାମ୍ପୁଲ୍ ଇତ୍ୟାଦି ଚାହୁଁଥିବ, ତାହା ହେଲେ ସେଥିପାଇଁ କେତେ ପଇସା ଦେବାକୁ ହେବ ଲୋକ ସୂଚନା

ଅଧିକାରୀ ଆମକୁ ଜଣାଇ ଦେବେ ଓ ତା'ର ୧୫ଦିନ ଭିତରେ ଆମକୁ ସେ ଟଙ୍କା ଦାଖଲ ଦେବାକୁ ହେବ । ଅନ୍ୟଥା ଦରଖାସ୍ତ ନାକଚ ହୋଇଯିବ । ଏଭଳି କ୍ଷେତ୍ରରେ କେତେ ଟଙ୍କା ଦେବାକୁ ହେବ ଜଣାଇବା ଦିନଠାରୁ ଟଙ୍କା ଦାଖଲ କରିବା ଭିତରେ ଯେତେଦିନ ଯିବ ତାହା ୩୦ ଦିନ ସହିତ ମିଶିଯିବ ।

**୧୭.ପ୍ର.: ସୂଚନା ପାଇବା ପାଇଁ କେତେ ପଇସା ଦେବାକୁ ପଡିବ ?**

ଉ.: (କ) ସୂଚନା ପାଇବାକୁ ହେଲେ କେଉଁଥି ପାଇଁ କେତେ ପଇସା ଦେବାକୁ ହେବ ସରକାରଙ୍କର କ୍ଷେତ୍ରରେ ତାହା ସରକାର ସ୍ଥିର କରିବେ । ରାଜଭବନ କ୍ଷେତ୍ରରେ ରାଜଭବନ ତରଫରୁ ନିର୍ଦ୍ଧାରିତ ହେବ ଏବଂ ମାନ୍ୟବର ହାଇକୋର୍ଟ କ୍ଷେତ୍ରରେ ମାନ୍ୟବର ହାଇକୋର୍ଟ ହିଁ ଠିକ୍ କରିବେ । ସେହିଭଳି ମାନ୍ୟବର ସୁପ୍ରିମ୍ କୋର୍ଟ ଓ ବିଧାନ ସଭା ତଥା ପାର୍ଲାମେଣ୍ଟ ନିଜ ନିଜର ପ୍ରଣୟନ ତଥା ଫିସ୍ ସ୍ଥିର କରିବେ । ତେବେ ଦରଖାସ୍ତ ଦେବା ପାଇଁ ବି.ପି.ଏଲ୍. ପରିବାରର ମୁଖ୍ୟଙ୍କୁ ପଇସା ଦେବାକୁ ପଡିବ ନାହିଁ । ତାଙ୍କୁ ପ୍ରଥମ ଓ ଦ୍ୱିତୀୟ ଅପିଲ୍ ପାଇଁ ମଧ୍ୟ ପଇସା ଦେବାକୁ ପଡିବ ନାହଁ । କିନ୍ତୁ ସୂଚନା ପାଇଁ ଯଥା ଫଟୋ କପି ବା ସିଡି ଇତ୍ୟାଦି ଆକାରରେ ଅନ୍ୟମାନଙ୍କୁ ଯାହା ପଇସା ପଡିବ ବି.ପି.ଏଲ୍. ପରିବାର ମଧ୍ୟ ସେହି ପଇସା ଦେବେ ।

(ଖ) ସୂଚନା ପାଇଁ ଦରଖାସ୍ତ ଦେଲାପରେ ଲୋକ ସୂଚନା ଅଧିକାରୀ ଯେତେ ଶୀଘ୍ର ସମ୍ଭବ ସୂଚନା ପାଇବା ପାଇଁ କେତେ ଟଙ୍କା ଦେବାକୁ ହେବ ତାହା ହିସାବ ସହ ଜଣାଇଦେବେ ।

(ଗ) ଯଦି ଦରଖାସ୍ତକାରୀ ଭାବନ୍ତି ଯେ ଲୋକ ସୂଚନା ଅଧିକାରୀ ନ୍ୟାୟ୍ୟ ମୂଲ୍ୟ ଅପେକ୍ଷା ଅଧିକା ଦାବି କରୁଛନ୍ତି ତେବେ ତାଙ୍କୁ ବା ଅପିଲ ଅଧିକାରୀଙ୍କୁ ପୂନର୍ବିଚାର ପାଇଁ ଅନୁରୋଧ କରିପାରିବେ ।

(ଘ) ଲୋକ ସୂଚନା ଅଧିକାରୀ ଯଦି ନିର୍ଦ୍ଦିଷ୍ଟ ଦିନ ମଧ୍ୟରେ ସୂଚନା ଦେଇ ପାରିବେ ନାହିଁ ତେବେ ପରବର୍ତ୍ତୀ ସମୟରେ ସୂଚନା ଦେବା ପାଇଁ ପଇସା ନେଇ ପାରିବେ ନାହିଁ ଏବଂ ଫଟୋକପି ବା ସିଡି ବା ଯେଉଁ ଆକାରରେ ଚାହୁଁଥିବେ ତାକୁ ମାଗଣାରେ ତାଙ୍କୁ ଦେବାକୁ ପଡିବ ।

**୧୮.ପ୍ର.: ଲୋକ ସୂଚନା ଅଧିକାରୀ କେଉଁ କେଉଁ କାରଣରୁ ସୂଚନା ଦେବାକୁ ମନା କରିପାରିବେ ?**

ଉ.: ସୂଚନା ଅଧିକାର ଆଇନରେ କେତେକ ସୂଚନା ଦେବା ପାଇଁ ଧାରା ୭, ୮ ଓ ୯ରେ ବାରଣ କରାଯାଇଛି ।

ସେଗୁଡିକ ହେଲା :

(କ) ଦେଶର ନିରାପତ୍ତା, ଅଖଣ୍ଡତା ଓ ସାର୍ବଭୌମତ୍ୱ ପ୍ରତି ଆଞ୍ଚ ଆସୁଥିଲେ ସେଭଳି ସୂଚନା ଦେଇ ହେବ ନାହିଁ ।

(ଖ) ସେହିଭଳି ଦେଶର ଅର୍ଥନୈତିକ, ବୈଜ୍ଞାନିକ ଓ ସାମରିକ ସ୍ୱାର୍ଥ ଜଡିତ ଥିଲେ ବା ବିଦେଶ ରାଷ୍ଟ୍ର ସହିତ ସମ୍ପର୍କକୁ କ୍ଷୁଣ୍ଣ କଲାଭଳି ହେଉଥିଲେ ବା କୌଣସି ଅପରାଧ ଘଟାଇବା ପାଇଁ ଉସୁକାଇବା ସୂଚନା ଦେଇ ହେବ ନାହିଁ ।

(ଗ) କୌଣସି ଟ୍ରିବୁନାଲ୍ ବା କୋର୍ଟ ଯଦି କୌଣସି ସୂଚନା ଦେବା ପାଇଁ ବାରଣ କରିଛନ୍ତି ଏବଂ ଯାହାକୁ ଘୋଷଣା କଲେ କୋର୍ଟ ଅବମାନନା ହେବ ସେଭଳି ସୂଚନା ଦେଇ ହେବ ନାହିଁ ।

(ଘ) ପାର୍ଲାମେଣ୍ଟ ବା ବିଧାନସଭାର ସ୍ୱାଧିକାର ଭଙ୍ଗ ହେଲା ଭଳି ସୂଚନା ଦେଇ ହେବ ନାହିଁ ।

(ଙ) ବାଣିଜ୍ୟ ବ୍ୟବସାୟ ବା ବୌଦ୍ଧିକ ସମ୍ପତ୍ତି ଘୋଷଣା କଲେ ଯଦି କ୍ଷତି ହେବାର ଥାଏ ତାହା ହେଲେ ସୂଚନା ଦେଇ ହେବ ନାହିଁ । ଉଦାହରଣ ସ୍ୱରୂପ ହିନ୍ଦୁସ୍ଥାନ ଲିଭର କମ୍ପାନୀକୁ ଲାଇଫ୍‌ବଏ ବା ଲକ୍ସ ସାବୁନର ଫର୍ମୁଲା ଜାଣିବା ପାଇଁ ପଚାରି ହେବ ନାହିଁ ।

(ଚ) ଜଣେ ବ୍ୟକ୍ତିଙ୍କର ଅନ୍ୟ ଜଣଙ୍କ ସହ ବିଶ୍ୱାସର ଯେଉଁ ସମ୍ପର୍କ ଥାଏ ସେ ବିଷୟରେ ସୂଚନା ମାଗି ପାରିବ ନାହିଁ । ଡାକ୍ତର ଓ ରୋଗୀ, ଓକିଲ ଓ ମହକିଲଙ୍କ ସମ୍ପର୍କ ବିଷୟରେ ସୂଚନା ମାଗି ହେବ ନାହିଁ ।

(ଛ) ତେବେ ସମସ୍ତ ବାରଣ ସତ୍ତ୍ୱେ ଯଦି ଲୋକ ସୂଚନା ଅଧିକାରୀଙ୍କର ହୃଦ୍‌ବୋଧ ହେଲାଯେ ସୂଚନା ଦେଲେ କ୍ଷତି ଅପେକ୍ଷା ଦେଶର ବା ସମାଜର ମଙ୍ଗଳ ସାଧିତ ହେବ ତେବେ ତାହା ସେ ଦେଇ ପାରିବେ ।

**୧୯ ପ୍ର. ବାରଣ କରାଯାଇଥିବା ବିଷୟଗୁଡ଼ିକ ସଦାବେଳ ପାଇଁ ଲାଗୁ ହେବ କି ?**

ଉ. ଆଇନ୍‌ରେ ଆଉ ଗୋଟିଏ ବ୍ୟବସ୍ଥା ରହିଛି । ତାହେଲା, ଆଇନ୍‌ର ୮ମ ଧାରାରେ ଯେଉଁ ଦୁଇଟି ବିଷୟରେ ସୂଚନା ଦେବା ପାଇଁ ବାରଣ କରାଯାଇଛି ଯଦି ସେ ସମ୍ପର୍କରେ କୌଣସି ଘଟଣା ଘଟିବାର ୨୦ବର୍ଷ ବା ତାଠାରୁ ଊର୍ଦ୍ଧ୍ୱ ସମୟ ବିତିଗଲାଣି ତେବେ ଲୋକ ସୂଚନା ଅଧିକାରୀ ତାହା ଦେଇପାରିବେ । ଘଟଣା ଘଟିବାର ୨୦ବର୍ଷ ହେଲାଣି କି ନାହିଁ ଯଦି ସେ ବିଷୟରେ ବିବାଦ ଉପୁଜେ, ତେବେ କେନ୍ଦ୍ର ସରକାରଙ୍କୁ ଲେଖି ମତାମତ ଲୋଡ଼ିବାକୁ ହେବ । ଅବଶ୍ୟ ଏଥିରୁ ଦେଶର ନିରାପତ୍ତା, ବିଧାନସଭା ଓ ପାର୍ଲାମେଣ୍ଟ୍‌ର ସ୍ୱାଧିକାରଭଙ୍ଗ ବା ମନ୍ତ୍ରିମଣ୍ଡଳ ବୈଠକରେ ଆଲୋଚନା ସମ୍ପର୍କୀୟ ସୂଚନାକୁ ବାଦ୍ ଦିଆଯାଇଛି ।

**୨୦. ପ୍ର. ଦୁର୍ନୀତି ଓ ମାନବାଧିକାର ଉଲଂଘନ ସମ୍ପର୍କରେ ଆଇନ୍‌ରେ କିଛି ବ୍ୟବସ୍ଥା ଅଛି କି ?**

ଉ. କେନ୍ଦ୍ର ସରକାର ଓ ରାଜ୍ୟସରକାରମାନେ ଏହି ଆଇନ୍‌ର ପରିସର ବାହାରେ କେତେକ ସଂସ୍ଥାକୁ ରଖିଛନ୍ତି ସତ, କିନ୍ତୁ ଦୁର୍ନୀତି ବା ମାନବାଧିକାର ଉଲଂଘନ କ୍ଷେତ୍ରରେ କେହି ବାଦ୍ ପଡ଼ି ନାହାନ୍ତି । ପ୍ରତ୍ୟେକ ସଂସ୍ଥାକୁ ଏ ସଂପର୍କରେ ପଚରା ଯାଇ ପାରିବ ଓ ତା'ର ଉତ୍ତର ତାକୁ ଦେବାକୁ ପଡ଼ିବ । ଅବଶ୍ୟ ମାନବାଧିକାର ଉଲଂଘନ କ୍ଷେତ୍ରରେ ସୂଚନା ଦେବା ପୂର୍ବରୁ ଯଦି ସଂସ୍ଥା କେନ୍ଦ୍ର ସରକାରଙ୍କର ହୋଇଥାଏ ତେବେ କେନ୍ଦ୍ରୀୟ ସୂଚନା କମିଶନଙ୍କର ଓ ସଂସ୍ଥା ରାଜ୍ୟ ସରକାରଙ୍କର ହୋଇଥିଲେ ରାଜ୍ୟ ସୂଚନା କମିଶନଙ୍କର ଅନୁମତି ନେବାକୁ ହେବ ।

**୨୧.ପ୍ର.: ଗୋଟିଏ ପ୍ରଶ୍ନର ଉତ୍ତର ଦେଲାବେଳେ କିଛି ଉତ୍ତର ଦେଇ ଆଉ କିଛି ଉତ୍ତର ମନା କରି ହେବକି ?**

ଉ.: ଲୋକ ସୂଚନା ଅଧିକାରୀଙ୍କର ଯଦି ହୃଦ୍‌ବୋଧ ହୁଏ, ଯେଉଁ ସବୁ ସୂଚନା ଦରଖାସ୍ତକାରୀ ମାଗିଛନ୍ତି ବା ଯେଉଁସବୁ ରେକର୍ଡ ଦେଖିବାକୁ ଚାହୁଁଛନ୍ତି ଅଥଚ ସେ ସବୁକୁ ବାରଣ କରାଯାଇଛି ତେବେ ସେଥିରୁ କିଛି ଅଂଶ ଦେଇଦେଲେ ବା ଦେଖାଇଲେ କୌଣସି ଆଂଚ ଆସିବ ନାହିଁ, ସେତକ ସେ ଦେଇପାରିବେ ଓ ବାକି ସୂଚନା ଦେଇ ପାରୁନଥିବାର କାରଣ ଉଲ୍ଲେଖ କରି ଜଣାଇବେ ।

**୨୨.ପ୍ର.: ଲୋକ ସୂଚନା ଅଧିକାରୀଙ୍କର କ'ଣ ସବୁ କର୍ତ୍ତବ୍ୟ ରହିଛି ?**

ଉ.: (କ) ଲୋକ ସୂଚନା ଅଧିକାରୀ ପ୍ରଥମେ ନାଗରିକଙ୍କ ଠାରୁ ଦରଖାସ୍ତ ଗ୍ରହଣ କରିବେ । ଯଦି ଦରଖାସ୍ତକାରୀ କୌଣସି କାରଣରୁ ଦରଖାସ୍ତଟିକୁ ଲେଖି ପାରୁନଥିବେ ତେବେ ତାଙ୍କ ପାଇଁ ଦରଖାସ୍ତଟିକୁ ଲେଖିବାରେ ସାହାଯ୍ୟ କରିବେ ।

(ଖ) ଦରଖାସ୍ତକାରୀ ଯେଉଁ ସୂଚନା ପାଇବାକୁ ଚାହୁଁଛନ୍ତି ତାହା ଯଦି ତାଙ୍କ ଅଫିସ୍ ସହିତ ସଂପୃକ୍ତ ନୁହେଁ ଏବଂ ତାହା ଅନ୍ୟ କୌଣସି ଅଫିସ୍ ସହିତ ସଂପୃକ୍ତ ତେବେ ଅତି ବେଶିରେ ପାଞ୍ଚଦିନ ମଧ୍ୟରେ ଦରଖାସ୍ତଟିକୁ ସଂପୃକ୍ତ ଅଫିସରଙ୍କ ପାଖକୁ ପଠାଇ ଦେବେ ଓ ଦରଖାସ୍ତକାରୀଙ୍କୁ ଜଣାଇଦେବେ ।

(ଗ) ଲୋକ ସୂଚନା ଅଧିକାରୀ ସୂଚନା ସଂଗ୍ରହ କରିବା ପାଇଁ ତାଙ୍କ ଅଫିସ୍‌ରେ ଯଦି ଅନ୍ୟମାନଙ୍କଠାରୁ ସୂଚନା ସଂଗ୍ରହ କରି ସେସବୁକୁ ଏକାଠି କରି ଦେବାକୁ ପଡୁଥାଏ, ତେବେ ଅନ୍ୟ ସମସ୍ତ ବ୍ୟକ୍ତିଙ୍କୁ ସେତେବେଳେ ସୂଚନା ଅଧିକାରୀ ବୋଲି ଧରାଯିବ ଏବଂ ବିଳମ୍ବ ଯୋଗୁଁ ଯଦି ଦଣ୍ଡିତ ହେବାକୁ ପଡ଼େ ତେବେ ସମସ୍ତଙ୍କୁ ଦଣ୍ଡିତ ହେବାକୁ ପଡ଼ିବ ।

(ଘ) ଦରଖାସ୍ତ ପାଇବାର ୩୦ ଦିନ ମଧ୍ୟରେ ଓ ଯେଉଁଠି ଜୀବନ ଓ ସ୍ୱାଧୀନତା ପ୍ରତି ବିପଦ ଥାଏ ସେ କ୍ଷେତ୍ରରେ ଦୁଇଦିନ ମଧ୍ୟରେ ସୂଚନା ଦେବାକୁ ହେବ ବା ସେ କାହିଁକି ସୂଚନା ଦେଉ ନାହାନ୍ତି ଆଇନ୍‌ର ସଂପୃକ୍ତ ଧାରା ଓ ଉପଧାରାକୁ ଲେଖି ଜଣାଇବାକୁ ପଡ଼ିବ । ତାହା ସହ ସେ କେତେଦିନ ଭିତରେ ଅପିଲ୍ କରି ପାରିବେ ଏବଂ ଅପିଲ୍ ଅଧିକାରୀଙ୍କର ନାମ ଓ ଠିକଣା ଜଣାଇଦେବେ ।

(ଙ) ଯଦି ଠିକଣା ସମୟ ମଧ୍ୟରେ ସୂଚନା ନଦେଲେ ତେବେ ସେ ମନା କଲେ ବୋଲି ଧରାଯିବ ।

(ଚ) ଦରଖାସ୍ତକାରୀ ସୂଚନା କେଉଁଭଳି ଭାବରେ ପାଇବାକୁ ଚାହୁଁଛନ୍ତି ଯଥା:- କେବଳ ଫାଇଲ୍ ପଢ଼ିବା ପାଇଁ ଚାହୁଁଛନ୍ତି ବା ଯଦି ଫାଇଲ୍ ପଢ଼ିସାରିଲା ପରେ ସେଥିରୁ କିଛି ପୃଷ୍ଠାର ଫଟୋକପି ଚାହୁଁଛନ୍ତି ବା ସୂଚନାକୁ ସିଡି ଆକାରରେ ଚାହୁଁଛନ୍ତି ତାକୁ ସେହି ଭଳି ଆକାରରେ ଦେବାକୁ ହେବ ।

(ଛ) ସେହିଭଳି ଦରଖାସ୍ତକାରୀ ସୂଚନାଟିକୁ ବ୍ୟକ୍ତିଗତଭାବେ ବା ରେଜିଷ୍ଟ୍ରର୍ ଡାକ ବା ସ୍ପିଡି ପୋଷ୍ଟରେ ନେବାକୁ ଚାହୁଁଛନ୍ତି ତାହା ଦରଖାସ୍ତରୁ ଜାଣି ଲୋକ ସୂଚନା ଅଧିକାରୀଙ୍କୁ ସେହିଭଳି ଭାବେ ଦେବାକୁ ପଡିବ ।

(ଜ) ସୂଚନାଟି ଯଦି କୌଣସି ତୃତୀୟ ପକ୍ଷଙ୍କ ସମ୍ବନ୍ଧୀୟ ତେବେ ଲୋକ ସୂଚନା ଅଧିକାରୀଙ୍କୁ ୫ଦିନ ମଧ୍ୟରେ ତୃତୀୟ ପକ୍ଷଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ପଡିବ ଏବଂ ତୃତୀୟ ପକ୍ଷଙ୍କର ମତାମତ ବିଚାରକୁ ନେବାକୁ ପଡିବ । ତୃତୀୟ ପକ୍ଷ ତାଙ୍କ ମତାମତ ୧୦ ଦିନ ମଧ୍ୟରେ ଦେବେ । ଲୋକ ସୂଚନା ଅଧିକାରୀଙ୍କ ମତାମତ ସହ ଯଦି ତୃତୀୟ ପକ୍ଷ ଏକମତ ନୁହଁନ୍ତି ତେବେ ସେ ଅପିଲ୍ କରିପାରନ୍ତି ।

**୨୩.ପ୍ର.: ସୂଚନା କମିଶନଙ୍କର କ୍ଷମତା ଓ କାର୍ଯ୍ୟାବଳୀଗୁଡିକ କ'ଣ ?**

ଉ.୧: (କ) ଯଦି କୌଣସି କାର୍ଯ୍ୟାଳୟରେ ଲୋକ ସୂଚନା ଅଧିକାରୀ ନିଯୁକ୍ତ ହୋଇ ନାହାନ୍ତି ବୋଲି ନାଗରିକଙ୍କର ଦରଖାସ୍ତ ଗ୍ରହଣ କରାଯାଇ ପାରୁ ନାହିଁ ତେବେ ସେ ସିଧାସଳଖ ଦରଖାସ୍ତଟିକୁ ରାଜ୍ୟ କମିଶନରଙ୍କର ବିଚାର ପାଇଁ ପଠାଇ ଦେଇ ପାରିବେ ।

(ଖ) ସେହିଭଳି କୌଣସି ଲୋକ ସୂଚନା ଅଧିକାରୀ ଦରଖାସ୍ତ ଗ୍ରହଣ କରିବା ପାଇଁ ମନା କଲେ ସେ ମଧ୍ୟ ସୂଚନା କମିଶନରଙ୍କ ପାଖକୁ ସିଧାସଳଖ ପଠାଇ ଦେଇପାରିବେ ।

(ଗ) ସୂଚନା ପାଇବା ପାଇଁ ଦରଖାସ୍ତ କରିଥିବା ବ୍ୟକ୍ତି ଯଦି ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଲୋକ ସୂଚନା ଅଧିକାରୀଙ୍କଠାରୁ କୌଣସି ସୂଚନା ପାଇପାରିଲେ ନାହିଁ ସେ ମଧ୍ୟ ସିଧାସଳଖ କମିଶନରଙ୍କ ପାଖକୁ ପଠାଇ ଦେଇପାରିବେ ।

(ଘ) ଯଦି କୌଣସି ଦରଖାସ୍ତକାରୀଙ୍କର ହୃଦ୍‌ବୋଧ ହେଲା ଯେ ସୂଚନା ପାଇଁ ଲୋକ ସୂଚନା ଅଧିକାରୀ ମାତ୍ରାଧିକ ମୂଲ୍ୟ ଦାବୀ କରୁଛନ୍ତି ସେ ମଧ୍ୟ କମିଶନରଙ୍କ ପାଖକୁ ସିଧାସଳଖ ପଠାଇ ଦେଇ ପାରିବେ ।

(ଙ) ଯଦି ଦରଖାସ୍ତକାରୀ ଭାବନ୍ତି ଯେ ଲୋକ ସୂଚନା ଅଧିକାରୀ ତାଙ୍କୁ ଭୁଲ୍ ତଥ୍ୟ ଦେଇଛନ୍ତି ବା ଅସଂପୂର୍ଣ୍ଣ ତଥ୍ୟ ଦେଇଛନ୍ତି ବା ଏଣୁତେଣୁ ତଥ୍ୟ ବା ବିଭ୍ରାନ୍ତିଙ୍କର ତଥ୍ୟ ଦେଇଛନ୍ତି ସେ କମିଶନରଙ୍କ ପାଖକୁ ସିଧାସଳଖ ଦରଖାସ୍ତ ପଠାଇ ଦେଇପାରନ୍ତି । ଏ ସମସ୍ତ ସ୍ଥଳରେ କମିଶନଙ୍କ ପାଖକୁ ଦରଖାସ୍ତ ପଠାଇବା ସମୟରେ କୌଣସି କୋର୍ଟ ଫି କିମ୍ବା ଅନ୍ୟାନ୍ୟ ଫି ପଡିବ ନାହିଁ ।

୨. ଆବଶ୍ୟକ ମନେ କଲେ ଓ ଯଥାଯଥ କାରଣ ଥିଲେ କମିଶନ ଠିକଣା କଥା ଜାଣିବା ପାଇଁ ତଦନ୍ତ କରି ପାରିବେ ।

୩. କୌଣସି ବିଷୟରେ କମିଶନଙ୍କ ତରଫରୁ ତଦନ୍ତ କଲାବେଳେ କମିଶନଙ୍କର ସିଭିଲ୍ କୋର୍ଟର କ୍ଷମତା ରହିବ ଓ କମିଶନ

(କ) ଯେକୌଣସି ବ୍ୟକ୍ତି ହାଜର ହେବା ପାଇଁ ଓ ଲିଖିତ ବା ମୌଖିକ ସାକ୍ଷ୍ୟ ଦେବା ପାଇଁ ସମନ ଦେଇ ପାରିବେ ।

(ଖ) କୌଣସି ଦଲିଲ୍, ଦସ୍ତାବିଜକୁ ଖୋଜି ବାହାର କରି ସେସବୁ ତଦାରଖ କରିପାରିବେ ।

(ଗ) ଏଫିଡେଭିଟ୍ ମାଧ୍ୟମରେ ସାକ୍ଷ୍ୟ ଗ୍ରହଣ କରିପାରିବେ ।

(ଘ) ଯେକୌଣସି ଅଫିସ୍ ବା କୋର୍ଟରୁ ରେକର୍ଡପତ୍ର ବା କପି ମାଗି ପାରିବେ ।

(ଙ) ସାକ୍ଷ୍ୟମାନଙ୍କୁ ଓ ଦଲିଲ୍ ଦସ୍ତାବିଜ୍ ପରୀକ୍ଷା କରିବା ପାଇଁ ସମନ ପଠାଇ ପାରିବେ ।

୪. ପାର୍ଲାମେଣ୍ଟ ବା ଯେକୌଣସି ରାଜ୍ୟର ବିଧାନସଭା ଦ୍ୱାରା ପ୍ରଣୀତ ଅନ୍ୟ ଯେକୌଣସି ଆଇନ୍‌ରେ କୌଣସି ରେକର୍ଡପତ୍ର ଯାଞ୍ଚ କରିବା ମନା କରାଯାଇଥିଲେ ମଧ୍ୟ ଏହି ଆଇନ୍ ବଳରେ କମିଶନ ତରଫରୁ ସେସବୁ ରେକର୍ଡପତ୍ର ମଗାଯାଇପାରିବ ଓ ଯାଞ୍ଚ କରାଯାଇପାରିବ । କୌଣସି କ୍ଷେତ୍ରରେ ତାକୁ ମନା କରାଯାଇପାରିବ ନାହିଁ ।

**୨୪.ପ୍ର.: ଜଣେ ଦରଖାସ୍ତକାରୀ କିଭଳି ଭାବେ ଅପିଲ୍ କରିପାରିବେ ?**

ଉ.: ଦରଖାସ୍ତକାରୀ ଯେଉଁଭଳି ଭାବେ ସୂଚନା ମାଗିଥିଲେ ବା ଯେଉଁଭଳି ପାଇବାକୁ ଚାହିଁଥିଲେ ତାଙ୍କୁ ଯଦି ସେଭଳି ସୂଚନା ଦିଆଗଲା ନାହିଁ, ତେବେ ଲୋକ ସୂଚନା ଅଧିକାରୀଙ୍କର କାର୍ଯ୍ୟ ଉପରେ ସେ ଅଫିସ୍‌ରେ ଥିବା ପ୍ରଥମ ଅପିଲ୍ ଅଧିକାରୀଙ୍କ ନିକଟରେ ଅପିଲ୍ ପାଇଁ ନିର୍ଦ୍ଦିଷ୍ଟ ଥିବା ଫର୍ମରେ ଅପିଲ୍ କରିବେ । ବି.ପି.ଏଲ୍. ପରିବାର ପାଇଁ ପଇସା ପଡିବ ନାହିଁ । ଅନ୍ୟମାନଙ୍କ ପାଇଁ ୨୦ଟଙ୍କାର କୋର୍ଟ ଫି ଲଗାଇ ଅପିଲ୍ ଅଧିକାରୀଙ୍କ ନିକଟରେ ଦରଖାସ୍ତ କରିବାକୁ ହେବ ।

- ଯଦି ଦରଖାସ୍ତକାରୀଙ୍କୁ ଯାହା ସୂଚନା ଦିଆଯାଇଛି ତାହା ଅସଂପୂର୍ଣ୍ଣ ବା ଭୁଲ୍ ତେବେ ସେ ଅପିଲ୍ କରିପାରିବେ । ସେଇଭଳି ଯଦି ସେ ସୂଚନା ଦେବା ପାଇଁ କୌଣସି କାରଣରୁ ମନାକରି ଲିଖିତ ଭାବରେ ଜଣାଇଲେ ତାହା ହେଲେ ମଧ୍ୟ ସେ ଅପିଲ୍ କରି ପାରିବେ ।

ଲୋକ ସୂଚନା ଅଧିକାରୀଙ୍କ ଠାରୁ ଯେଉଁ ଉତ୍ତର ପାଇଲେ ସେଥିରେ ଯଦି ସେ ସନ୍ତୁଷ୍ଟ ନୁହଁନ୍ତି ତେବେ ୩୦ ଦିନ ମଧ୍ୟରେ ଅପିଲ୍ କରି ପାରିବେ ।

- ଯଦି କୌଣସି ଯଥାଯଥ କାରଣ ଯୋଗୁଁ ୩୦ ଦିନ ମଧ୍ୟରେ ଅପିଲ୍ କରିପାରି ନାହାନ୍ତି ତାହାହେଲେ ଉପଯୁକ୍ତ କାରଣ ଦର୍ଶାଇ ୩୦ଦିନପରେ ମଧ୍ୟ ଦରଖାସ୍ତ କରିପାରିବେ । ପ୍ରଥମ ଅପିଲ୍ ଅଧିକାରୀ ତାଙ୍କର ନିଷ୍ପତ୍ତିକୁ ୩୦ଦିନ ବା ଯୁକ୍ତିଯୁକ୍ତ କାରଣ ଦର୍ଶାଇ ସର୍ବମୋଟ୍ ୪୫ଦିନ ମଧ୍ୟରେ ତାଙ୍କର ନିଷ୍ପତ୍ତି ଦେବାକୁ ହେବ ।

- ସେହିପରି ତୃତୀୟ ପକ୍ଷଙ୍କର ସୂଚନା ବିଷୟରେ ଲୋକ ସୂଚନା ଅଧିକାରୀଙ୍କର ନିଷ୍ପତ୍ତିରେ ଯଦି ତୃତୀୟ ପକ୍ଷ ସନ୍ତୁଷ୍ଟ ନୁହଁନ୍ତି ସେ ମଧ୍ୟ ଅପିଲ୍ କରିପାରିବେ ।

- ପ୍ରଥମ ଅପିଲ୍ ଅଧିକାରୀ ତାଙ୍କର ନିଷ୍ପତ୍ତିକୁ ୩୦ ଦିନ ମଧ୍ୟରେ ଜଣାଇବାକୁ ପଡିବ ।

- ପ୍ରଥମ ଅପିଲ୍ ଅଧିକାରୀଙ୍କର ନିଷ୍ପତ୍ତିରେ ଯଦି ଦରଖାସ୍ତକାରୀ ସନ୍ତୁଷ୍ଟ ନୁହନ୍ତି ତେବେ ନିଷ୍ପତ୍ତି ତାରିଖଠାରୁ ୯୦ଦିନ ମଧ୍ୟରେ ସୂଚନା କମିଶନଙ୍କ ଠାରେ ଦ୍ୱିତୀୟ ବାର ଶେଷ ଅପିଲ୍ କରିପାରିବେ । କୌଣସି ଯଥାଯଥ କାରଣଯୋଗୁଁ ଯଦି ୯୦ଦିନ ଭିତରେ କମିଶନଙ୍କ ପାଖରେ ଅପିଲ୍ କରିହୋଇ ନାହିଁ ତେବେ କାରଣ ଦର୍ଶାଇବାକୁ ପଡିବ । ବି.ପି.ଏଲ୍. ପରିବାରଙ୍କୁ ଏହି ଅପିଲ୍ ପାଇଁ ପଇସା ପଡିବ ନାହିଁ । ଅନ୍ୟମାନଙ୍କୁ ୨୫ଟଙ୍କାର କୋର୍ଟ ଫି ଦେବାକୁ ପଡିବ ।

- ଦ୍ୱିତୀୟ ଅପିଲ୍ ଶୁଣାଣିବେଳେ ଲୋକ ସୂଚନା ଅଧିକାରୀ ଓ ପ୍ରଥମ ଅପିଲ୍ ଅଧିକାରୀଙ୍କୁ ତାଙ୍କ ନିଷ୍ପତ୍ତି କାହିଁକି ଠିକ୍ ବୋଲି ଭାବୁଛନ୍ତି ସେ ବିଷୟରେ କମିଶନଙ୍କୁ ବୁଝାଇବାକୁ ହେବ ଏବଂ ଶୁଣାଣିବେଳେ ଦରଖାସ୍ତକାରୀ ବା ଯିଏ ଅପିଲ୍ କରିଛନ୍ତି ସେ ବ୍ୟକ୍ତିଗତ ଭାବେ ଉପସ୍ଥିତ ରହିପାରନ୍ତି ବା ନରହିପାରନ୍ତି । ତାଙ୍କପାଇଁ ସେ ଓକିଲ ଦେଇପାରନ୍ତି ବା ତାଙ୍କକଥା କହିବା ପାଇଁ କୌଣସି ପ୍ରତିନିଧିଙ୍କୁ ଦାୟିତ୍ୱ ଦେଇପାରନ୍ତି । ତାଙ୍କପାଇଁ ଶୁଣାଣିବେଳେ କେହି ଉପସ୍ଥିତ ନରହିଲେ ମଧ୍ୟ ସେ ନ୍ୟାୟ ପାଇବାରେ କୌଣସି ଅନ୍ତରାୟ ସୃଷ୍ଟି ହେବ ନାହିଁ ।

- ଦ୍ୱିତୀୟ ଅପିଲ୍ ଶୁଣାଣି ପରେ କମିଶନ ଯାହା ନିଷ୍ପତ୍ତି ନେବେ ତାହା ବାଧ୍ୟତାମୂଳକ ଓ ଚୂଡାନ୍ତ ।

କମିଶନ ନିଷ୍ପତ୍ତି ନେଲାବେଳେ ଯେକୌଣସି କର୍ତ୍ତୃପକ୍ଷଙ୍କୁ ଆଇନ୍‌ର ବିଭିନ୍ନ ବିଷୟକୁ ପାଳନ କରିବା ପାଇଁ ବାଧ୍ୟ କରିପାରିବେ । ଯଥା:

(କ) ଯେଉଁଭଳି ଦରଖାସ୍ତକାରୀ ଚାହିଁଥିବେ ।

(ଖ) ଲୋକ ସୂଚନା ଅଧିକାରୀ ନିଯୁକ୍ତି ହୋଇ ନଥିଲେ ନିଯୁକ୍ତ କରିବା ।

(ଗ) କେଉଁ କେଉଁ ସୂଚନା ପ୍ରକାଶ କରିବାକୁ ହେବ ତାହା କହିପାରିବେ ।

(ଘ) ରେକର୍ଡପତ୍ର ଯେଉଁଭଳି ଭାବରେ ପରିଚାଳନା କରାଯାଉଛି ବା ନଷ୍ଟ କରାଯାଉଛି ତାର ପରିବର୍ତ୍ତନ ପାଇଁ କହିପାରିବେ ।

(ଙ) ଲୋକ ସୂଚନା ଅଧିକାରୀଙ୍କର ଅଧିକ ତାଲିମ୍ ପାଇଁ କହିପାରିବେ ।

(ଚ) ୪ର୍ଥ ଧାରାରେ ଥିବା ସମସ୍ତ ତଥ୍ୟ ପ୍ରକାଶ କରିବା ପାଇଁ କହିପାରିବେ ।

(ଛ) ଠିକ୍ ସମୟରେ ଓ ଠିକଣା ଭାବରେ ସୂଚନା ନପାଇବା ଫଳରେ ଦରଖାସ୍ତକାରୀଙ୍କର ଯାହା କ୍ଷତି ଘଟିଲା ତାକୁ ଭରଣା କରିବା ପାଇଁ କହିପାରିବେ ।

(ଜ) ଆଇନ୍‌ରେ ଥିବା ବ୍ୟବସ୍ଥା ଅନୁଯାୟୀ ଦଣ୍ଡ ଦେଇ ପାରିବେ ବା ଦରଖାସ୍ତକାରୀଙ୍କର ଅପିଲ୍ ଦରଖାସ୍ତ ନାକଚ କରିପାରିବେ ।

**୨୫.ପ୍ର.: ଏହି ଆଇନ୍‌ରେ କିଭଳି ଦଣ୍ଡ ବ୍ୟବସ୍ଥା ରହିଛି ?**

ଉ.: ସୂଚନା କମିଶନ ତରଫରୁ କମ୍ପ୍ଲେଣ୍ଟ ବା ଅପିଲ୍ ଶୁଣିଲାବେଳେ ଯଦି ତାଙ୍କର ହୃଦ୍‌ବୋଧ ହୁଏ ଯେ ଲୋକ ସୂଚନା ଅଧିକାରୀ କୌଣସି କାରଣ ନଥାଇ ଦରଖାସ୍ତ ଗ୍ରହଣ କରିବା ପାଇଁ ମନା କରୁଛନ୍ତି ବା ଠିକଣା ସମୟରେ ସୂଚନା ଦେଇ ନାହାନ୍ତି ବା ମନ୍ଦ ଉଦ୍ଦେଶ୍ୟ ଥାଇ ସୂଚନା ଦେବା ପାଇଁ ମନା କରିଛନ୍ତି ବା ଜାଣିଶୁଣି ଭୁଲ୍, ଅସଂପୂର୍ଣ୍ଣ ବା ଏଣୁତେଣୁ ସୂଚନା ଜଣାଇଛନ୍ତି ବା ଯେଉଁ ରେକର୍ଡପତ୍ର ବିଷୟରେ ସୂଚନା ମାଗିଥିଲେ ତାକୁ ନଷ୍ଟ କରିଦେଇଛନ୍ତି ବା କୌଣସି ପ୍ରକାର ସେ ଯେପରି ସୂଚନା ପାଇବେ ନାହିଁ ତା'ର ବ୍ୟବସ୍ଥା କରିଛନ୍ତି ତେବେ ଦରଖାସ୍ତକାରୀଙ୍କର ଦରଖାସ୍ତ ସୂଚନା ଅଧିକାରୀଙ୍କଠାରେ ପହଞ୍ଚିବା ଦିନଠାରୁ ଧାର୍ଯ୍ୟ ଦିନ ବାଦ୍ ଯେଉଁଦିନ ଲୋକ ସୂଚନା ଅଧିକାରୀ ସୂଚନା ଦେବେ, ସେତେଦିନ ପାଇଁ ଦିନକୁ ୨୫୦ଟଙ୍କା ହିସାବରେ ସର୍ବୋଚ୍ଚ ୨୫,୦୦୦ ଟଙ୍କା ପର୍ଯ୍ୟନ୍ତ ଜୋରିମାନା କରିପାରିବେ । ଏହି ଜୋରିମାନା ଅର୍ଥ ଲୋକ ସୂଚନା ଅଧିକାରୀଙ୍କୁ ନିଜ ପକେଟରୁ ଦେବାକୁ ପଡିବ ଓ ତାକୁ ସରକାର ଭରଣା କରିବେ ନାହିଁ ।

କିନ୍ତୁ ଜୋରିମାନା ଦଣ୍ଡଦେବା ପୂର୍ବରୁ ସୂଚନା କମିଶନଙ୍କ ତରଫରୁ ଲୋକ ସୂଚନା ଅଧିକାରୀଙ୍କୁ ନିଜକଥା କହିବା ପାଇଁ ଓ କାଗଜପତ୍ର ଦେଖାଇବା ପାଇଁ ଯଥେଷ୍ଟ ସୁଯୋଗ ଦିଆଯିବ ।

ଲୋକ ସୂଚନା ଅଧିକାରୀ ଯଦି ନିର୍ଦ୍ଦୋଷ ହୋଇଥାନ୍ତି ତା'ହେଲେ ସେଥିପାଇଁ ତାଙ୍କୁ ହିଁ ପ୍ରମାଣ ଦେବାକୁ ହେବ ।

ଯେଉଁ ଯେଉଁ କାରଣ ଯୋଗୁଁ ଲୋକ ସୂଚନା ଅଧିକାରୀଙ୍କୁ ଜୋରିମାନା ଦଣ୍ଡରେ ଦଣ୍ଡିତ କରାଯିବ ସେହି ସେହି କାରଣ ଯୋଗୁଁ ବିଭାଗୀୟ କାର୍ଯ୍ୟାନୁଷ୍ଠାନ ପାଇଁ କମିଶନ ତରଫରୁ ସଂପୃକ୍ତ ବିଭାଗକୁ ପରାମର୍ଶ ଦିଆଯିବ ।

ଲୋକ ସୂଚନା ଅଧିକାରୀଙ୍କୁ ନିଜ କଥା କହିବା ପାଇଁ ଓ ସମସ୍ତ ରେକର୍ଡପତ୍ର ଦେଖାଇବା ପାଇଁ ଯଦି ଯଥେଷ୍ଟ ସୁଯୋଗ ଦିଆଯାଇଛି ତାହାହେଲେ ତାଙ୍କୁ ଦିଆଯାଇଥିବା ଦଣ୍ଡାଦେଶ ବିରୁଦ୍ଧରେ କୌଣସି କୋର୍ଟ କୌଣସି ଦରଖାସ୍ତ ବା ଅପିଲ୍ ଗ୍ରହଣ କରିବେ ନାହିଁ ।

କିନ୍ତୁ ଲୋକ ସୂଚନା ଅଧିକାରୀ ଯଦି ବିଶ୍ୱାସର ସହ କୌଣସି ସୂଚନା ଦେଇଥାନ୍ତି ବା ସେଭଳି କାର୍ଯ୍ୟ କିଛି କରିଥାନ୍ତି ତାହା ହେଲେ ତାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ହୋଇ ପାରିବ ନାହିଁ ।

**୨୬. ପ୍ର.: କିଛି ସଂସ୍ଥାକୁ ଏଇ ଆଇନ୍‌ର ପରିସର ବାହାରେ ରଖାଯାଇଛି କି ?**

ଉ.: ଦେଶର ନିରାପତ୍ତା, ଅଖଣ୍ଡତା ଓ ସାର୍ବଭୌମତ୍ୱ ତଥା ଅପରାଧ ନିୟନ୍ତ୍ରଣ ଅନୁଷ୍ଠାନମାନଙ୍କୁ ସୂଚନା ଦେବାରୁ ଅବ୍ୟାହତି ଦିଆଯାଇଛି, ଏଭଳି ସଂସ୍ଥାଗୁଡିକର ସଂଖ୍ୟା ବଢ଼ାଯାଇପାରେ ବା କମାଯାଇପାରେ । କିନ୍ତୁ ସରକାରଙ୍କର ସେଭଳି ନିଷ୍ପତ୍ତିକୁ ପାର୍ଲିଆମେଣ୍ଟରେ ଉପସ୍ଥାପନ କରିବାକୁ ପଡିବ । ସେହିଭଳି ରାଜ୍ୟ ସରକାରମାନେ ମଧ୍ୟ କେତେକ ସଂସ୍ଥାକୁ ଏଇ ଆଇନ୍‌ର ପରିସର ବାହାରେ ରଖିପାରିବେ । ସେମାନଙ୍କର ସଂଖ୍ୟା ମଧ୍ୟ ବଢ଼ାଯାଇପାରେ ବା କମାଯାଇପାରେ । କିନ୍ତୁ ସେ ସମ୍ପର୍କୀୟ ନିଷ୍ପତ୍ତି ଆଦେଶ ନେବାକୁ ରାଜ୍ୟସରକାର ବିଧାନସଭାରେ ଉପସ୍ଥାପିତ କରିବେ । ରାଜ୍ୟରେ ରାଜ୍ୟସରକାରଙ୍କ ତରଫରୁ ଆଇନ୍‌କୁ କାର୍ଯ୍ୟକାରୀ କରିବାକୁ ନିୟମ ପ୍ରଣୟନ କରିପାରିବେ । କିନ୍ତୁ ସେ ନିୟମାବଳୀ ଆଇନ୍‌ରେ ଥିବା ବ୍ୟବସ୍ଥାକୁ ଉଲଂଘନ କରିପାରିବ ନାହିଁ । ସେଭଳି ହାଇକୋର୍ଟ, ବିଧାନସଭା ଓ ରାଜଭବନ ତରଫରୁ ନିଜନିଜର ନିୟମ ପ୍ରଣୟନ କରିପାରିବେ ଯାହା ମଧ୍ୟ ଆଇନ୍‌ରେ ଥିବା ମୂଳ ବ୍ୟବସ୍ଥାରୁ ପରିପନ୍ଥୀ ହେଉନଥିବ ।

ପ୍ରତିବର୍ଷ ସୂଚନା କମିଶନ ତରଫରୁ ଏକ ବାର୍ଷିକ ରିପୋର୍ଟ ପ୍ରସ୍ତୁତ କରାଯିବ ଯାହାକି ଯେତେଶୀଘ୍ର ସମ୍ଭବ ବିଧାନସଭାରେ ସରକାରଙ୍କ ତରଫରୁ ଉପସ୍ଥାପନ କରାଯିବ । ସେହି ରିପୋର୍ଟରେ ସୂଚନା ଦରଖାସ୍ତ ସମ୍ବନ୍ଧୀୟ ସମସ୍ତ ବିବରଣୀ ଓ ଆଇନ୍‌କୁ ଠିକଣାଭାବେ ପରିଚାଳନା କରିବା ପାଇଁ ଏବଂ ଆଇନ୍‌ର ସୁଫଳ ଜନସାଧାରଣଙ୍କ ପାଖରେ ପହଞ୍ଚାଇବା ପାଇଁ କି କି ପଦକ୍ଷେପ ନିଆଯିବା ଆବଶ୍ୟକ ସେ ସମ୍ପର୍କରେ ପରାମର୍ଶ ରହିବ ।

ସୌଜନ୍ୟ : ଓଡ଼ିଶା ସୂଚନା କମିଶନ, ଭୁବନେଶ୍ୱର

---

# ଶୈବପୀଠ ଧବଳେଶ୍ୱରରେ ଭାରତର ଦୀର୍ଘତମ ଝୁଲା ପୋଲ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀଙ୍କ ଦ୍ୱାରା ଉଦ୍‌ଘାଟିତ

ମହାନଦୀ ମଝିରେ ଥିବା ରାଜ୍ୟର ପ୍ରସିଦ୍ଧ ଶୈବପୀଠ ଧବଳେଶ୍ୱରକୁ ଏବେ ଶ୍ରଦ୍ଧାଳୁ ଭକ୍ତମାନେ ଡଙ୍ଗାରେ ଯିବା ଆବଶ୍ୟକ ପଡ଼ିବ ନାହିଁ । ଶିବରାତ୍ରି ଓ ବଡ଼ଓଷା ଭଳି ପର୍ବପର୍ବାଣିରେ ଧବଳେଶ୍ୱରରେ ପରିଲକ୍ଷିତ ହେଉଥିବା ଅସମ୍ଭବ ଭିଡ଼ ଓ ଜନସମୁଦ୍ରକୁ ଏଣିକି ହଇରାଣ ହରକତ ହେବାକୁ ପଡ଼ିବ ନାହିଁ । ଗତ ଅକ୍ଟୋବର ୩୦ ତାରିଖ ସନ୍ଧ୍ୟାରେ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଧବଳେଶ୍ୱରଠାରେ ଭାରତର ଦୀର୍ଘତମ ଝୁଲା ପୋଲ ଉଦ୍‌ଘାଟନ କରି ଏହା ପ୍ରକାଶ କରିଛନ୍ତି ।

ଏହି ଉପଲକ୍ଷେ ଆୟୋଜିତ ଏକ ବର୍ଣ୍ଣାଢ଼୍ୟ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଗ୍ରାମ୍ୟ ଉନ୍ନୟନ, ଶିକ୍ଷା ଓ ଆଇନ ମନ୍ତ୍ରୀ ଶ୍ରୀ ହରିଚନ୍ଦନ କହିଲେ ଯେ ଧବଳେଶ୍ୱରଙ୍କୁ ଦର୍ଶନ କରିବା ପାଇଁ ଏଯାବତ୍ ଡଙ୍ଗା ହିଁ ଏକମାତ୍ର ଭରସା ଥିଲା । ୨୫୪ ମିଟର ଦୀର୍ଘ ଓ ୨ ମିଟର ଓସାରର ଏହି ଝୁଲାପୋଲ ଓ ପର୍ଯ୍ୟଟକମାନଙ୍କ ପାଇଁ ମୁଖ୍ୟ ଆକର୍ଷଣ ପାଲଟିବ । ଧବଳେଶ୍ୱର ପୀଠ ଓ ଝୁଲାପୋଲରେ ଯାତାୟାତ ପାଇଁ ଶ୍ରଦ୍ଧାଳୁ ଭକ୍ତ ଓ ପର୍ଯ୍ୟଟକମାନେ କେବଳ ଆମ ରାଜ୍ୟ କାହିଁକି, ଦେଶର କୋଣ ଅନୁକୋଣରୁ ଆସିବେ ଏବଂ ଏ ଅଞ୍ଚଳର ସାମଗ୍ରିକ ବିକାଶରେ ଏହି ଝୁଲାପୋଲର ଏକ ବୃହତ୍ ଅବଦାନ ରହିବ । ଗ୍ରାମ୍ୟ ଉନ୍ନୟନ ବିଭାଗ ଦ୍ୱାରା ବି. ଇଂଜିନିୟର୍ସଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ୩.୬୦ କୋଟି ଟଙ୍କା ବ୍ୟୟରେ ନିର୍ମିତ ଏହି ଝୁଲାପୋଲ ଲଛମନ ଝୁଲାର ଦୈର୍ଘ୍ୟଠାରୁ ୧୧୪ ମିଟର ଓ ରାମଝୁଲାର ଦୈର୍ଘ୍ୟଠାରୁ ୫୪ ମିଟର ଅଧିକ ହୋଇଥିବାରୁ ଏହା ଭାରତର ଦୀର୍ଘତମ ଝୁଲାପୋଲ ଏବଂ ବୈଷୟିକ ଜ୍ଞାନକୌଶଳ ବ୍ୟବହାରରେ ଏହା ରାଜ୍ୟ ମଧରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିପାରିଛି ବୋଲି ମନ୍ତ୍ରୀ ଶ୍ରୀ ହରିଚନ୍ଦନ ପ୍ରକାଶ କରିଥିଲେ । ଝୁଲାପୋଲର ସମୁଚିତ ରକ୍ଷଣାବେକ୍ଷଣ ଓ ଏଥିରେ ଏକାଥରକେ ସର୍ବାଧିକ ୧୦୦୦ ଜଣ ଯାତାୟାତ କରିବା, ପାରିପାର୍ଶ୍ୱିକ ସୌନ୍ଦର୍ଯ୍ୟ ରକ୍ଷା, ପରିମଳ ବ୍ୟବସ୍ଥାରେ ଉନ୍ନତି, ଶୈବପୀଠରେ ପୂଜକମାନଙ୍କ ଆଦର୍ଶ ବ୍ୟବହାର ପ୍ରଦର୍ଶନ ଜରୁରି ବୋଲି ସେ ମତବ୍ୟକ୍ତ କରିଥିଲେ ।

# ସୂଚନା ଅଧିକାରର ଚତୁର୍ଥ ଧାରା ଓ ଜନ କର୍ତ୍ତୃପକ୍ଷ

**ଜଗଦାନନ୍ଦ**

ଆମ ଦେଶ ଭାରତ ଏକ ଗଣତାନ୍ତ୍ରିକ ରାଷ୍ଟ୍ର । ଏଠାରେ ଗଣ ହିଁ ସର୍ବସ୍ୱ ଓ ସର୍ବୋଚ୍ଚ କର୍ତ୍ତା । ଭାରତୀୟ ଗଣତାନ୍ତ୍ରିକ ବ୍ୟବସ୍ଥାରେ ସ୍ୱାଧୀନତା ପରଠାରୁ ଯେତେ ଯେତେ ଆଇନ ପ୍ରଣୟନ ଓ କାର୍ଯ୍ୟକାରୀ ହୋଇଛି, ତହିଁମଧ୍ୟରୁ ସବୁଠାରୁ ଶକ୍ତିଶାଳୀ ହେଉଛି ସୂଚନା ଅଧିକାର ଆଇନ୍-୨୦୦୫ । ଜନ ଅଧିକାରର ସୁରକ୍ଷା କବଚ ଭାବେ କଲ୍ୟାଣକାରୀ ଗଣତନ୍ତ୍ରକୁ ସଫଳ କରାଇବାରେ ଏହି ଆଇନ୍ ଏକ ଅମୋଘ ଅସ୍ତ୍ର । ବିଶେଷକରି ସମାଜର ନିମ୍ନ ବର୍ଗଠାରୁ ଆରମ୍ଭ କରି ସାଧାରଣ ନାଗରିକ ପର୍ଯ୍ୟନ୍ତ ସୂଚନା ପାଇବା କ୍ଷେତ୍ରରେ ଆଇନ୍ ଆଖିରେ ସମସ୍ତେ ସମାନ । ସରକାରୀ ଦପ୍ତରରୁ ନ୍ୟାୟପାଳିକା ପର୍ଯ୍ୟନ୍ତ ସାଧାରଣ ନାଗରିକ ସୂଚନା ପାଇବା ପାଇଁ ଯେଉଁଭଳି ନିର୍ଯ୍ୟାତନା ଓ ହତାଦରର ଶିକାର ହେବା ସଂଗେସଂଗେ ଗୋପନୀୟତା ଆଇନ ବଳରେ ନ୍ୟାୟ ପାଇବାରୁ ବଞ୍ଚିତ ହେଉଥିଲେ, ତାହାର ଅନ୍ତ ଘଟିଛି ଏବଂ ସଭିଙ୍କ ପାଇଁ ସୂଚନା ପାଇବାର ଦ୍ୱାର ଖୋଲି ଯାଇଛି । ବିଶେଷ କରି ସାଧାରଣ ନାଗରିକଙ୍କ ହତାଶାଭାବରେ ପରିବର୍ତ୍ତନ ଆଣିବା ପାଇଁ ସୂଚନା ଅଧିକାର ଆଇନ୍, ୨୦୦୫ ଏକ ଐତିହାସିକ ପଦକ୍ଷେପ । ସ୍ୱାଧୀନ ଭାରତରେ ସୂଚନା ଅଧିକାର ଏକମାତ୍ର ଆଇନ୍ ଯେଉଁଥିରେକି ସରକାର, ପ୍ରଶାସନ, ନ୍ୟାୟପାଳିକାଠାରୁ ଆରମ୍ଭ କରି ପାର୍ଲିଆମେଣ୍ଟ ତଥା ରାଜନୈତିକ ଦଳ ପର୍ଯ୍ୟନ୍ତ ସ୍ୱଚ୍ଛତା ରକ୍ଷା କରାଯିବାସହ ଉତ୍ତରଦାୟିତ୍ୱ ନିର୍ବାହ କ୍ଷେତ୍ରରେ ଏକ ଶକ୍ତିଶାଳୀ ଭୂମିକା ନିଭାଇ ପାରିବ । ତେବେ ଏହି ଆଇନରେ ବିଭିନ୍ନ ଧାରା ଓ ବିଧାନ ରହିଛି । ମାତ୍ର ଧାରା-୪ ହେଉଛି ଏହି ଆଇନ୍‌ର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ।

**ଚତୁର୍ଥ ଧାରାର ଉଦ୍ଦେଶ୍ୟ :**

ସୂଚନା ଅଧିକାର ଆଇନ୍ ବଳରେ ଜଣେ ନାଗରିକ କିପରି ସୂଚନା ପାଇ ପାରିବ, ସେଥିପାଇଁ ବିଧି ବ୍ୟବସ୍ଥାମାନ ରହିଛି । ଭାରତର ପ୍ରଚଳିତ ଶାସନ ବ୍ୟବସ୍ଥା ଭିତରେ ଗୋଟେ ପଟେ ଜନତା ଥିଲାବେଳେ ଅନ୍ୟପଟେ ରହିଛି ସରକାର । ଅନେକ ବର୍ଷଧରି ଏ ଦୁହିଁଙ୍କ ମଧ୍ୟରେ ବିରାଟ ବ୍ୟବଧାନ ରହି ଆସିଛି । ତେବେ ଏହି ବ୍ୟବଧାନର ପାଚେରୀ ଭାଙ୍ଗିବା ଉଦ୍ଦେଶ୍ୟରେ ଜନତାଙ୍କ ତରଫରୁ ସୂଚନା ମାଗିବାର ବ୍ୟବସ୍ଥା ଥିଲାବେଳେ ସରକାରଙ୍କ ତରଫରୁ ସୂଚନା ଦେବାର ବ୍ୟବସ୍ଥା ମଧ୍ୟ ରହିଛି । ଏହାହିଁ ହେଉଛି ନୂତନ ସୂଚନା ଅଧିକାର ଆଇନ୍‌ର ମହତ୍ୱ ଓ ବିଶେଷତ୍ୱ । ସୂଚନାଟିଏ ପାଇଁ ସାଧାରଣ ନାଗରିକଙ୍କୁ ଯେଉଁଭଳି ଆବେଦନ ଫର୍ମ ଯୋଗାଡ କରିବା ଠାରୁ ଆରମ୍ଭ କରି ନିର୍ଦ୍ଦିଷ୍ଟ ଦିନଯାଏ ଅପେକ୍ଷା କରିବାର ପ୍ରକ୍ରିୟା ଆଉ ଦରକାର ପଡିନପାରେ, ସେଥିପାଇଁ ସରକାରୀ ବିଭାଗ ତରଫରୁ ସ୍ୱତଃପ୍ରବୃତ୍ତ ଭାବେ ଯେଉଁଭଳି ସୂଚନା ପ୍ରଦାନର ବ୍ୟବସ୍ଥା ଆଇନ୍‌ରେ କରାଯାଇଛି, ସେଥିରେ ହୁଏତ ତା'ର ଆବଶ୍ୟକୀୟ ସୂଚନାଟି ମିଳିଯାଇ ପାରେ । କେବଳ କୌଣସି ସୂଚନାର ନକଲ ଚାହିଁଲେ ଏଥିପାଇଁ ମୂଲ୍ୟ ଦେବାକୁ ପଡିପାରେ । ଏହି ଚତୁର୍ଥ ଧାରାଟି କ'ଣ ଓ ଏଥିରେ ନାଗରିକ ସୂଚନା ପାଇବା ପାଇଁ କି ପ୍ରକାର ବ୍ୟବସ୍ଥା ରହିଛି ସେ ସମ୍ପର୍କରେ ଆଲୋକପାତ କରିବା ଏହି ନିବନ୍ଧର ଉଦ୍ଦେଶ୍ୟ ।

**ସୂଚନା ପ୍ରଦାନର ବ୍ୟବସ୍ଥା :**

ଆଇନ୍‌ର ଚତୁର୍ଥ ଧାରାରେ ସ୍ପଷ୍ଟ ନିର୍ଦ୍ଦେଶ ଅଛି ଯେ, ପ୍ରତି ଜନ କର୍ତ୍ତୃପକ୍ଷ ଏହି ଆଇନ୍ ଲାଗୁ ହେବାର ୧୨୦ ଦିନ ମଧ୍ୟରେ ନିଜ ନିଜ ସଂସ୍ଥା/ବିଭାଗର ନିର୍ଦ୍ଦିଷ୍ଟ ସ୍ଥାନରେ ସାଧାରଣ ନାଗରିକଙ୍କ ପାଇଁ ସ୍ୱତଃପ୍ରବୃତ୍ତ ଭାବେ ସୂଚନା ପ୍ରଦର୍ଶିତ କରିବାକୁ ବାଧ୍ୟ ଅଟନ୍ତି । ସେସବୁ ହେଲା :

୧. ନିଜର ସଂସ୍ଥା/ସଂଗଠନ/ବିଭାଗ ସଂପର୍କିତ ସବିଶେଷ ତଥ୍ୟ, କାର୍ଯ୍ୟାବଳୀ ଓ ଦାୟିତ୍ୱ

୨. ପ୍ରତି ଅଧିକାରୀ ଓ କର୍ମଚାରୀମାନଙ୍କର କ୍ଷମତା ଓ ଦାୟିତ୍ୱ

୩. ସଂସ୍ଥାରେ କାର୍ଯ୍ୟ ତଦାରଖ ଏବଂ ଉତ୍ତରଦାୟିତ୍ୱ ସଂପର୍କିତ ବିଧିବିଧାନ ସହ ବିଭିନ୍ନ ବିଷୟଗତ ନିଷ୍ପତ୍ତିଗ୍ରହଣ ପ୍ରକ୍ରିୟାର ବିବରଣୀ

୪. ଏହାର ପ୍ରତ୍ୟେକ କାର୍ଯ୍ୟ ନିର୍ବାହ ପଦ୍ଧତି

୫. କାର୍ଯ୍ୟନିର୍ବାହ ସମୟରେ କର୍ମଚାରୀମାନଙ୍କ ଦ୍ୱାରା ବ୍ୟବହୃତ ନୀତି ନିୟମ, ନିର୍ଦ୍ଦେଶନାମା, ନିୟମାବଳୀ, ପ୍ରୟୋଗବିଧି ବା ଏ ସଂପର୍କିତ ଅନ୍ୟାନ୍ୟ ରେକର୍ଡପତ୍ର ।

୬.    ସଂସ୍ଥା ଅଧୀନରେ ବା ନିୟନ୍ତ୍ରଣରେ ଥିବା ବିଭିନ୍ନ ପ୍ରକାର ରେକର୍ଡପତ୍ର ।

୭.    ନିଜ ସଂସ୍ଥାର ନୀତି ନିର୍ଦ୍ଧାରଣ ବା ନିର୍ଦ୍ଧାରିତ ନୀତିର କାର୍ଯ୍ୟାନ୍ୱୟନ ସଂପର୍କରେ ସର୍ବସାଧାରଣଙ୍କ ସହ ପରାମର୍ଶ କରିବା ବା ସେମାନଙ୍କ ଆପତ୍ତି ଅଭିଯୋଗ ଶୁଣିବା ପାଇଁ ଉଦ୍ଦିଷ୍ଟ ବ୍ୟବସ୍ଥା ସଂବନ୍ଧୀୟ ବିଶଦ ସୂଚନା ।

୮.    ଅନୁଷ୍ଠାନ ଦ୍ୱାରା ଦୁଇ ବା ତତୋଧିକ ବ୍ୟକ୍ତିଙ୍କୁ ନେଇ ଗଠିତ ବୋର୍ଡ, କାଉନସିଲ୍, କମିଟି ବା ଅନ୍ୟ କୌଣସି ଉପ-ସଂସ୍ଥାର ଗଠନ, ଉଦ୍ଦେଶ୍ୟ ଇତ୍ୟାଦି ସମେତ ଏସବୁର ବୈଠକରେ ସର୍ବସାଧାରଣ ଯୋଗଦେଇ ପାରିବେ କି ନା ଏବଂ ସଂପୃକ୍ତ ବୈଠକଗୁଡ଼ିକର ବିବରଣୀ ସର୍ବସାଧାରଣଙ୍କ ପାଇଁ ଉପଲବ୍ଧ କି ନା ସେ ସମ୍ବନ୍ଧରେ ସଠିକ୍ ବିବୃତି ।

୯.    ଅନୁଷ୍ଠାନର କର୍ମଚାରୀ/ଅଧିକାରୀଙ୍କ ସଂପର୍କରେ ସୂଚନା ପୁସ୍ତିକା ।

୧୦.   ସଂସ୍ଥାର ବିଧିବିଧାନଗୁଡ଼ିକରେ ନିର୍ଦ୍ଦିଷ୍ଟ ହୋଇଥିବା ପ୍ରତ୍ୟେକ ଅଧିକାରୀ ଓ କର୍ମଚାରୀଙ୍କ ବିଭିନ୍ନ ଭତ୍ତା ଓ ପ୍ରାପ୍ୟ, ମାସିକ ଦରମା ରାଶିର ବିବରଣୀ ।

୧୧.   ସଂସ୍ଥା ଅଧୀନରେ ଥିବା ପ୍ରତ୍ୟେକ ଏଜେନ୍‌ସି ନିମନ୍ତେ ଉଦ୍ଦିଷ୍ଟ ବଜେଟ୍ ସମେତ ପ୍ରତ୍ୟେକ କର୍ମଯୋଜନା ଏବଂ ଏଥିନିମନ୍ତେ ବ୍ୟୟ ବରାଦ, ବଣ୍ଟାଯାଇଥିବା ଅର୍ଥରାଶିର ବିବରଣୀ ।

୧୨.   ପ୍ରତ୍ୟେକ କାର୍ଯ୍ୟକ୍ରମ ବାବଦ ଅର୍ଥ ବରାଦ ଏବଂ ହିତାଧିକାରୀଙ୍କ ସଂପର୍କରେ ସବିଶେଷ ବିବରଣୀ ସହ ସହାୟତା କାର୍ଯ୍ୟକ୍ରମର କାର୍ଯ୍ୟାନ୍ୱୟନ ପ୍ରକ୍ରିୟାର ସବିଶେଷ ସୂଚନା ।

୧୩.   ସଂସ୍ଥା ତରଫରୁ ମଂଜୁର ହୋଇଥିବା ରିହାତି, ଅନୁମତି ବା ସ୍ୱୀକୃତିପ୍ରାପ୍ତ କର୍ମକର୍ତ୍ତାଙ୍କ ସଂପର୍କରେ ବିଶଦ ବିବରଣୀ ।

୧୪.   ସଂସ୍ଥାରେ ଥିବା ବୈଦ୍ୟୁତିକ ସାମଗ୍ରୀ ମାଧ୍ୟମରେ କେଉଁ ତଥ୍ୟ କିପରି ପାଇହେବ, ସେ ସଂପର୍କରେ ବିଶଦ ସୂଚନା ।

୧୫.   ସାଧାରଣ ନାଗରିକ ଅଧିକ ସୂଚନା ପାଇବା ପାଇଁ ଏ ସମସ୍ତ ସୁବିଧା ବ୍ୟତୀତ ଯଦି ସଂସ୍ଥାର କୌଣସି ପାଠାଗାର/ପଠନଗୃହ ଥାଏ, ତେବେ ତାର କାର୍ଯ୍ୟସମୟ ଓ ଅନ୍ୟାନ୍ୟ ବ୍ୟବସ୍ଥା ସଂପର୍କରେ ବିଶଦ ସୂଚନା ।

୧୬.   ସଂସ୍ଥାର ଜନସୂଚନା ଅଧିକାରୀମାନଙ୍କର ନାମ, ପଦବୀ ଏବଂ ଅନ୍ୟାନ୍ୟ ବିବରଣୀ ।

୧୭.   ଉପରୋକ୍ତ ସୂଚନା ବ୍ୟତୀତ ଅନ୍ୟ ଯେଉଁସବୁ ବିଷୟରେ ଜନ କର୍ତ୍ତୃପକ୍ଷ ଉଚିତ୍ ମନେକରିବେ, ସେସବୁର ସୂଚନା ରହିବ ଏବଂ ଏ ସମସ୍ତ ସୂଚନା ପ୍ରକାଶନକୁ ବର୍ଷକୁ ଥରେ ଓ ଆବଶ୍ୟକ ସ୍ଥଳେ ନିୟମିତ ନବୀକରଣ କରିବେ ।

- ଜନସ୍ୱାର୍ଥକୁ ପ୍ରଭାବିତ କରୁଥିବା ଗୁରୁତ୍ୱପୂର୍ଣ୍ଣ ନୀତି ନିର୍ଦ୍ଧାରଣ ସମୟରେ ବା କୌଣସି ଏକ ନିଷ୍ପତ୍ତି ଘୋଷଣା କଲାବେଳେ ସେ ସଂପର୍କିତ ସମସ୍ତ ପ୍ରାରମ୍ଭିକ ସୂଚନାକୁ ସର୍ବସାଧାରଣଙ୍କ ଅବଗତି ନିମନ୍ତେ ପ୍ରକାଶନ କରିବେ ।
- ପ୍ରଭାବିତ ଜନସାଧାରଣଙ୍କ ସମକ୍ଷରେ ନିଜର ପ୍ରଶାସନିକ ନିଷ୍ପତ୍ତି ଓ ଏହାର ଯୁକ୍ତିଯୁକ୍ତତାର କାରଣ ଉପସ୍ଥାପନା କରିବେ ।

**ସୂଚନା ପ୍ରଦାନର ମାଧ୍ୟମ ଓ ପ୍ରକ୍ରିୟା:**

ସେହିପରି ଧାରା ୪ର ଉପଧାରା (୨)ରେ ପ୍ରତ୍ୟେକ ଜନ କର୍ତ୍ତୃପକ୍ଷ ଇଣ୍ଟରନେଟ୍ ସମେତ ଅନ୍ୟାନ୍ୟ ଯୋଗାଯୋଗ ମାଧ୍ୟମରେ ଏବଂ ନିୟମିତ ବ୍ୟବଧାନରେ ନିଜ ତରଫରୁ ସ୍ୱତଃପ୍ରବୃତ୍ତ ଭାବେ ଯଥାସମ୍ଭବ ଅଧିକରୁ ଅଧିକ ସୂଚନା ପ୍ରସାରଣ ପାଇଁ ସର୍ବଦା ପ୍ରୟାସ ଜାରି ରଖିବେ, ଯଦ୍ୱାରାକି ସାଧାରଣ ନାଗରିକ ସୂଚନା ପାଇବା ଲାଗି ଏହି ଆଇନ୍‌କୁ ସର୍ବନିମ୍ନ ଆବଶ୍ୟକତା ଭାବେ ବ୍ୟବହାର କରିପାରିବେ ।

ଜନ କର୍ତ୍ତୃପକ୍ଷ ପ୍ରତି ସୂଚନାର ବ୍ୟାପକତା ପାଇଁ ତାହାକୁ ଏପରି ରୂପରେ ଓ ଢ଼ଙ୍ଗରେ ପ୍ରସାରଣର ବ୍ୟବସ୍ଥା କରିବେ, ଯଦ୍ୱାରାକି ସାଧାରଣ ଲୋକଙ୍କୁ ସହଜରେ ସୂଚନା ମିଳିପାରୁଥିବ ।

ସୂଚନା ପ୍ରସାରଣ ନିମନ୍ତେ ଜନ କର୍ତ୍ତୃପକ୍ଷମାନଙ୍କୁ ସର୍ବନିମ୍ନ ଖର୍ଚ୍ଚ, ସ୍ଥାନୀୟ ଭାଷା ଓ ସବୁଠାରୁ ଫଳପ୍ରଦ ମାଧ୍ୟମକୁ ବିଚାରକୁ ନେବାକୁ ହେବ । ବିଶେଷତଃ କେନ୍ଦ୍ର ଓ ରାଜ୍ୟସ୍ତରୀୟ ଜନସୂଚନା ଅଧିକାରୀମାନଙ୍କ ନିୟନ୍ତ୍ରଣରେ ଥିବା ବୈଦ୍ୟୁତିକ ମାଧ୍ୟମରେ ଥିବା ସୂଚନାଗୁଡ଼ିକ ଯଥାସମ୍ଭବ ଯେପରି ସହଜରେ ମିଳିପାରୁଥିବ ଏବଂ ତାହା ଯେପରି ବିନାମୂଲ୍ୟରେ ଯୋଗାଇ ଦିଆଯାଇ ପାରିବ କିମ୍ବା ମୁଦ୍ରଣ ଖର୍ଚ୍ଚର ମୂଲ୍ୟ ବିନିମୟରେ ଯୋଗାଇ ଦିଆଯିବ ସେଥିପ୍ରତି ଯତ୍ନବାନ୍ ହେବେ ।

ଜନ କର୍ତ୍ତୃପକ୍ଷ ସୂଚନା ପ୍ରସାରଣ କହିଲେ ନୋଟିସ୍ ବୋର୍ଡ, ଦୈନିକ ସମ୍ବାଦପତ୍ର, ସର୍ବସାଧାରଣଙ୍କ ଅବଗତି ନିମନ୍ତେ ଘୋଷଣା, ଗଣମାଧ୍ୟମ ଜରିଆରେ ପ୍ରଚାର, ଇଣ୍ଟରନେଟ୍ ମାଧ୍ୟମରେ ବା କୌଣସି ଜନ କର୍ତ୍ତୃପକ୍ଷଙ୍କ ଅଫିସ୍‌କୁ ଯାଇ ନିରୀକ୍ଷଣ କରିବା ସମେତ ଅନ୍ୟ ଯେକୌଣସି ମାଧ୍ୟମରେ ବିଜ୍ଞପ୍ତି ଜରିଆରେ ସର୍ବସାଧାରଣଙ୍କ ଗୋଚରାର୍ଥେ ସୂଚନା ଦେବାର ବ୍ୟବସ୍ଥା କରିବେ ।

ପ୍ରତ୍ୟେକ ଜନ ସୂଚନା ଅଧିକାରୀଙ୍କ ପାଖରେ ଏ ସମସ୍ତ ସୂଚନା ଉପଲବ୍ଧ ହେବା ନିମନ୍ତେ ଆବଶ୍ୟକୀୟ ରେକର୍ଡପତ୍ର, ଡକୁମେଣ୍ଟ୍ କିମ୍ବା କମ୍ପ୍ୟୁଟର ରହିବା ଦରକାର, ଯେଉଁଥିରେକି ଜନ ସୂଚନା ଅଧିକାରୀ ଉପରୋକ୍ତ ସୂଚନାଗୁଡ଼ିକୁ କମ୍ପ୍ୟୁଟରରେ ମହଜୁଦ୍ ରଖିପାରିବେ ।

ଅଫିସର କାର୍ଯ୍ୟ ସମୟ ମଧ୍ୟରେ ସୂଚନା ଦେବା ପାଇଁ ପ୍ରସ୍ତୁତ ଥିବେ, ଯଦ୍ୱାରାକି ସାଧାରଣ ନାଗରିକ ଚାହୁଁଥିବା ସୂଚନା ତତ୍‌କ୍ଷଣାତ୍ ଦେଖିପାରିବେ । ଆବଶ୍ୟକ ହେଲେ ଚାହୁଁଥିବା ସୂଚନାର କପି ମାଗିଲାମାତ୍ରେ ମଧ୍ୟ ପାଇ ପାରିବେ ।

ଜନ କର୍ତ୍ତୃପକ୍ଷମାନେ ନିଜ ତରଫରୁ ସୂଚନା ପ୍ରଦର୍ଶନ କରିବା ଦ୍ୱାରା ପ୍ରତ୍ୟେକ ଜନ କର୍ତ୍ତୃପକ୍ଷ ନେଉଥିବା ନୀତିଗତ ନିଷ୍ପତ୍ତି ଗ୍ରହଣ ପ୍ରକ୍ରିୟା ସଂପର୍କରେ ସାଧାରଣ ନାଗରିକ ବୁଝିପାରିବେ ଏବଂ ବିଭିନ୍ନ ଜନକଲ୍ୟାଣ ଯୋଜନା, ଲୋକନୀତିଗୁଡିକରେ ଥିବା ତ୍ରୁଟିବିଚ୍ୟୁତିକୁ ସୁଧାରିବାରେ ସହାୟକ ହୋଇପାରିବେ । ଏହାଦ୍ୱାରା ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱ ବୃଦ୍ଧି ପାଇବ । ଉଦାହରଣ ସ୍ୱରୂପ, ଏକ ବନ୍ଧ ନିର୍ମାଣ ବା ଶକ୍ତିପ୍ରକଳ୍ପ ଯୋଜନା ନିମନ୍ତେ ଘରୋଇ ଜମି ଅଧିଗ୍ରହଣ କିମ୍ବା ନୂଆ ଦାରିଦ୍ର୍ୟ ଦୂରୀକରଣ ଭିତ୍ତିକ ନୀତି ବା ସ୍କିମ୍ ଭଳି କୌଣସି ଯୋଜନା ସଂପର୍କରେ ନିଆଯାଉଥିବା ନିଷ୍ପତ୍ତିଗୁଡିକର ସବିଶେଷ ସୂଚନା ପ୍ରକାଶ ପାଇବା ଆବଶ୍ୟକ । ଆହୁରି ମଧ୍ୟ ପ୍ରତି ଜନ କର୍ତ୍ତୃପକ୍ଷ ଏକ ଜନକଲ୍ୟାଣ ଯୋଜନାରୁ ଯଦି ଜଣେ ହିତାଧିକାରୀଙ୍କୁ ପ୍ରତ୍ୟାହାର କରିବାକୁ ନିଷ୍ପତ୍ତି ନେଇଛନ୍ତି, ତେବେ ଏ ସମ୍ପର୍କରେ ଜନ କର୍ତ୍ତୃପକ୍ଷ ସ୍ୱତନ୍ତ୍ର ଭାବେ ସେହି ହିତାଧିକାରୀଙ୍କୁ କେଉଁ କାରଣ ପାଇଁ ପ୍ରତ୍ୟାହାର କରାଗଲା ତାହା ଲିଖିତ ଭାବେ ଜଣାଇବେ ।

ଦେଶର ବିକାଶ ପଥେ ସରକାରଙ୍କ ବିଭିନ୍ନ କଲ୍ୟାଣକାରୀ ଯୋଜନାର ମୁଖ୍ୟ ଅଂଶୀଦାର ହେଉଛନ୍ତି ସାଧାରଣ ନାଗରିକ । ଏହାକୁ ମନେରଖି ବର୍ତ୍ତମାନ ସରକାରୀ ଜନ କର୍ତ୍ତୃପକ୍ଷଗଣ ଜନତା ଆଡକୁ ସହଯୋଗର ହାତ ବଢ଼ାଇ ଦେଇ ସେମାନଙ୍କର ଅଧିକ ନିକଟତର ହେବାର ଯେଉଁ ସୁଯୋଗ ସୂଚନା ଅଧିକାର ଆଇନ ଆଣି ଦେଇଛି, ତାହା ଅପୂର୍ବ । ଏହା ଭାରତବର୍ଷରେ ନିଶ୍ଚୟ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିପାରିବ । ତେଣୁ ଏହି ଆଇନ୍‌କୁ କାଗଜପତ୍ରରୁ ବାହାର କରି ଯେତେ ଶୀଘ୍ର ଲୋକଙ୍କ ବ୍ୟବହାରରେ ଲଗାଯାଇ ପାରିଲେ ବିକାଶର କ୍ରାନ୍ତି ଆସିପାରିବ ।

ସଦସ୍ୟ ସମ୍ପାଦକ
ସି.ୱାଇ.ଏସ୍.ଡି., ଭୁବନେଶ୍ୱର

# ଇନ୍ଦିରା ଆବାସ ପ୍ରଦାନ ନିମନ୍ତେ ପ୍ରତ୍ୟେକ ପଞ୍ଚାୟତକୁ ଅର୍ଥ ପ୍ରଦାନ କରାଯାଇ ଗ୍ରାମସେବକଙ୍କ ଜରିଆରେ ଚେକ୍ ବଣ୍ଟନ କରାଯିବ

ପଞ୍ଚାୟତିରାଜ ବିଭାଗ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଯୋଜନାର ସ୍ୱଚ୍ଛ ଓ ସଫଳ କାର୍ଯ୍ୟକାରିତା ନିମନ୍ତେ ରାଜ୍ୟସ୍ତରୀୟ ଭିଜିଲାନ୍‌ସ ଓ ମନିଟରିଂ ବୈଠକରେ ଅଧକ୍ଷତା କରି ରାଜ୍ୟ ପଞ୍ଚାୟତିରାଜ ଓ ସଂସଦୀୟ ବ୍ୟାପାର ମନ୍ତ୍ରୀ ଶ୍ରୀ ରଘୁନାଥ ମହାନ୍ତି ଇନ୍ଦିରା ଆବାସ ଅର୍ଥ ପ୍ରତ୍ୟେକ ପଞ୍ଚାୟତକୁ ପ୍ରଦାନ କରାଯାଇ ଗ୍ରାମସେବକଙ୍କ ଜରିଆରେ ଚେକ୍ ବଣ୍ଟନ କରାଯିବ ବୋଲି କହିଛନ୍ତି ।

ଗ୍ରାମ୍ୟ ଉନ୍ନୟନ ଏବଂ ଦାରିଦ୍ର୍ୟ ଦୂରୀକରଣ ଯୋଜନାରେ ପ୍ରଚୁର ଅର୍ଥ ବିନିଯୋଗ ହେଉଥିବା ବେଳେ ଏହି ପ୍ରକଳ୍ପଗୁଡ଼ିକର ସ୍ୱଚ୍ଛତା ଆଣିବା ପାଇଁ ରାଜ୍ୟ ସ୍ତରରେ ଭିଜିଲାନ୍‌ସ ଏବଂ ମନିଟରିଂ କମିଟି ଗଠନ କରାଯାଇଛି ବୋଲି ମନ୍ତ୍ରୀ ଶ୍ରୀ ମହାନ୍ତି ପ୍ରକାଶ କରିଥିଲେ ।

ବୈଠକ ପ୍ରାରମ୍ଭରେ ପଞ୍ଚାୟତିରାଜ ବିଭାଗ ଶାସନ ସଚିବ ଶ୍ରୀ ଗଗନ କୁମାର ଧଳ ପ୍ରାରମ୍ଭିକ ସୂଚନା ପ୍ରଦାନ କରିଥିଲେ । ତା.୨୦.୦୧.୨୦୦୪ରିଖରେ ଅନୁଷ୍ଠିତ ହୋଇଥିବା ପୂର୍ବ ବୈଠକର ବିବରଣୀକୁ ଅନୁମୋଦନ କରାଯାଇ ବୈଠକରେ ଆଲୋଚନା କରାଯାଇଥିଲା । ପୂର୍ବରୁ ଚାଲୁଥିବା ଇନ୍ଦିରା ଆବାସ ବଣ୍ଟନ ପ୍ରଣାଳୀକୁ ବନ୍ଦ କରାଯାଇ ଏକ ପାଞ୍ଚବର୍ଷିଆ ଅପେକ୍ଷା କରିଥିବା ତାଲିକା ପ୍ରସ୍ତୁତି ଏବଂ ପ୍ରକାଶନ ନିମନ୍ତେ ପଦକ୍ଷେପ ନିଆଯାଇଥିବା ବିଷୟରେ ସଚିବ ଶ୍ରୀ ଧଳ ପ୍ରକାଶ କରିଥିଲେ । ପଞ୍ଚାୟତିରାଜ ବିଭାଗର ସ୍ୱତନ୍ତ୍ର ପ୍ରକଳ୍ପ ନିର୍ଦ୍ଦେଶକ ମୁଖ୍ୟ ଦୁର୍ନୀତି ନିବାରଣ ଅଧିକାରୀ ଦାୟିତ୍ୱରେ ରହିଥିବା ବେଳେ ସେଲ୍‌ର ଆଉ ଦୁଇଟି ନିର୍ବାହୀ/ସହକାରୀ ଯନ୍ତ୍ରୀ ପଦବୀ ପୂରଣ ନିମନ୍ତେ ପଦକ୍ଷେପ ନିଆଯାଉଥିବା ଅଧ୍ୟକ୍ଷ ତଥା ମନ୍ତ୍ରୀ ଶ୍ରୀ ମହାନ୍ତି ବୈଠକରେ ପ୍ରକାଶ କରିଥିଲେ । ୨୦୦୫-୦୬ ଆର୍ଥିକ ବର୍ଷରେ ୭୭,୮୫୦ଟି ଇନ୍ଦିରା ଆବାସ (ସାଧାରଣ) ଗୃହ ନିର୍ମାଣ କରାଯାଇ ୧୯୪୮୪.୨୧ ଲକ୍ଷ ଟଙ୍କା ବିନିଯୋଗ କରାଯାଇଛି, ଯାହାକି ସମୁଦାୟ ଅନୁଦାନ ଅର୍ଥର ୯୪ ପ୍ରତିଶତ ଏବଂ ଗୃହ ନିର୍ମାଣର ୧୦୩ ପ୍ରତିଶତ । ଆମ ରାଜ୍ୟକୁ ସମୁଦାୟ ୨୦୭୩୨.୫୦ ଲକ୍ଷ ଟଙ୍କା ବ୍ୟୟରେ ୭୫,୪୬୫ଟି ଇନ୍ଦିରା ଆବାସ ଗୃହ ନିର୍ମାଣ ନିମନ୍ତେ ମଂଜୁର କରାଯାଇଥିଲା ।

୨୦୦୬-୦୭ ଆର୍ଥିକ ବର୍ଷରେ ସେପ୍ଟେମ୍ବର, ୨୦୦୬ ସୁଦ୍ଧା ୪୯୦୨.୫୩ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇ ୧୭,୯୦୭ଟି ଇନ୍ଦିରା ଆବାସ ଗୃହ ନିର୍ମାଣ କରାଯାଇଛି । ଏହା ସମୁଦାୟ ମଂଜୁର ଅର୍ଥର ଶତକଡ଼ା ୩୦ ଏବଂ ଇନ୍ଦିରା ଆବାସ ଗୃହର ଶତକଡ଼ା ୨୨ ଅଟେ । ଚଳିତ ଆର୍ଥିକ ବର୍ଷରେ ଆମ ରାଜ୍ୟରେ ୧୨୯୧୨.୨୪ ଲକ୍ଷ ଟଙ୍କା ୮୦,୨୨୦ଟି ଇନ୍ଦିରା ଆବାସ ଗୃହ (ସାଧାରଣ) ନିମନ୍ତେ ଗଚ୍ଛିତ ରହିଛି ।

# ପ୍ରଗତି ପଥେ ସୂଚନା ଆଇନ

ଓମ୍ ପ୍ରକାଶ

ବହୁ ଆଲୋଚିତ ଓ ବହୁ ଜନଆଦୃତ 'ସୂଚନା ଅଧିକାର ଆଇନ' ଅକ୍ଟୋବର ୧୨ ତାରିଖ ୨୦୦୫ରେ କାର୍ଯ୍ୟକାରୀ ହେବାର ଏକ ବର୍ଷ ପୂର୍ତ୍ତି ପାଳନ କରୁଛି । ସାମାଜିକ ଦୃଷ୍ଟିକୋଣରୁ ଏହି ଆଇନର ଯଥେଷ୍ଟ ଗୁରୁତ୍ୱ ରହିଛି । ବିଭିନ୍ନ ସରକାରୀ ଦପ୍ତରରେ କାମ କିପରି ଚାଲିଛି ଓ କ'ଣ ସବୁ ହେଉଛି ତାହା ଜାଣିବାକୁ ଜଣେ ନାଗରିକ ଏହାଦ୍ୱାରା ଅଧିକାର ପାଇଛି । ମୋଟାମୋଟି ଭାବେ ଗଣତନ୍ତ୍ରରେ ସରକାରଙ୍କ କାର୍ଯ୍ୟକ୍ରମକୁ ଜାଣିବା ପାଇଁ ଜନତାଙ୍କୁ ଅଧିକାର ଦେବା ଏହି ଆଇନ୍‌ର ମୌଳିକ ଉଦ୍ଦେଶ୍ୟ । ସେଥିପାଇଁ ୨୦୦୧ ମସିହାରେ ଭାରତ ସରକାରଙ୍କ ଆଇନ ଆୟୋଗର ୧୭୯ତମ ରିପୋର୍ଟ ଅନୁଯାୟୀ ପ୍ରବର୍ତ୍ତିତ (Freedom of Information Act) ସୂଚନା ଜାଣିବାର ସ୍ୱାଧୀନତା ଆଇନ୍-୨୦୦୨ରେ ୧୫୦ରୁ ଅଧିକ ସଂଶୋଧନ କରାଯାଇ ଏହି ଆଇନ ପ୍ରସ୍ତୁତ ହୋଇଛି । ଏହା ସହିତ ସୂଚନା ଜାଣିବାର ଅଧିକାର ବ୍ୟକ୍ତିର ମୌଳିକ ଅଧିକାର ଶ୍ରେଣୀଭୁକ୍ତ ହୋଇ ସମ୍ବିଧାନର ଧାରା-୧୯ରେ ସ୍ଥାନିତ ହୋଇଛି । ସରକାରଙ୍କ ମତରେ ଏହା ସମସ୍ତ ସରକାରୀ ବିଭାଗର ଦ୍ୱାରକୁ ଲୋକମାନଙ୍କ ପରୀକ୍ଷାନିରୀକ୍ଷା ପାଇଁ ଖୋଲି ଦେଇଛି । ସରକାରଙ୍କ ଏହି ଆଇନ ଅନୁସାରେ ଏହା ସବଳକୁ ସହାୟତା କରିବା ସହ ଦୁର୍ବଳକୁ ଶକ୍ତି ପ୍ରଦାନ କରିବ । ତେବେ ଏହି ସୂଚନା ଅଧିକାର ଆଇନ ପ୍ରକୃତରେ କ'ଣ ଏବଂ ଏହା କିପରି ସାଧାରଣ ଜନତାଙ୍କ ପାଇଁ ସହାୟକ ହୋଇପାରିବ ? ଏହିଭଳି କେତେକ ପ୍ରଶ୍ନ ସାଧାରଣ ଲୋକଙ୍କ ମନରେ ଉଙ୍କି ମାରୁଥିବାବେଳେ ଆସନ୍ତୁ ଜାଣିବା ଏହି ଆଇନର ଉପକାରିତା ବିଷୟରେ ।

ପ୍ର. ସୂଚନା ଅଧିକାର ଆଇନ ପ୍ରକୃତରେ କ'ଣ ?

ଉ. ଭାରତ ସରକାରଙ୍କ ଦ୍ୱାରା ପ୍ରଣୀତ ଏହା ଏକ ନୂଆ ନିୟମ । ଏହା ଯେକୌଣସି ସରକାରୀ ବିଭାଗରୁ ସୂଚନା ହାସଲ କରିବାର ମୌଳିକ ଅଧିକାର ଭାରତୀୟ ନାଗରିକମାନଙ୍କୁ ପ୍ରଦାନ କରିଥାଏ । ଏହି ନିୟମ ଯୋଗୁଁ ପ୍ରଶାସନ ବିଷୟରେ ସମସ୍ତେ ସବୁକିଛି ଜାଣିପାରିବେ ।

ପ୍ର. ମାତ୍ର ଏପରି ଆଇନର ଆବଶ୍ୟକତା କ'ଣ ?

ଉ. ପ୍ରକୃତ ଗଣତନ୍ତ୍ରର ସଫଳତା ପାଇଁ ସୂଚନା ନିହାତି ଜରୁରି । କଥା କହିବା, ବକ୍ତବ୍ୟ ସାବ୍ୟସ୍ତ କରିବା ଓ ଶିକ୍ଷା ହାସଲ କରିବା ଭଳି ସୂଚନା ହାସଲ କରିବା ବି ଏକ ମୌଳିକ ଅଧିକାରର ଶ୍ରେଣୀଭୁକ୍ତ ହୋଇଛି । ପୁଣି ଭାରତ ପରି ଦେଶରେ ନାଗରିକମାନଙ୍କ ନିକଟରେ ସହଜ ଓ ସରଳ ଉପାୟରେ ସୂଚନା ପହଞ୍ଚିବା ଆବଶ୍ୟକ । ଏହି ଆଇନର ସମର୍ଥକମାନେ ଯୁକ୍ତି କରନ୍ତି ଯେ, ସରକାରଙ୍କଠାରୁ ସରଳ ଓ ଅବାଧ ଭାବରେ ସୂଚନା ଲୋକଙ୍କ ନିକଟରେ ପହଞ୍ଚିଲେ ହିଁ ସେମାନେ ପ୍ରଶାସନ ବିଷୟରେ ସବୁକିଛି ଜାଣିପାରିବେ ।

ପ୍ର. ଏହି ଆଇନ ଦ୍ୱାରା ଲୋକେ କି ପ୍ରକାର ସୂଚନା ହାସଲ କରିପାରିବେ ?

ଉ. ଏହି ଆଇନ ଅନୁସାରେ ମିଳିବାକୁ ଥିବା ସୂଚନା ମଧ୍ୟରେ ରହିଛି ସରକାରୀ ରେକର୍ଡ଼, ନଥିପତ୍ର, ଫାଇଲ, ମେମୋ, ଇ-ମେଲ, ମତାମତ, ପରାମର୍ଶ, ପ୍ରେସ୍ ବିଜ୍ଞପ୍ତି, ସର୍କୁଲାର ଆଦେଶ, ଲଗ୍‌ବହି, ଚୁକ୍ତି, ରିପୋର୍ଟ, ନମୁନା, ଡାଟା ଏବଂ ବୈଦ୍ୟୁତିକ ଓ ଛାପା ଭାବରେ ଥିବା ଯେକୌଣସି ସାମଗ୍ରୀ । ଏହାବ୍ୟତୀତ କେଉଁ ଅଫିସର୍ ଓ କର୍ମଚାରୀଙ୍କ କାର୍ଯ୍ୟ କ'ଣ, ନିଷ୍ପତ୍ତି ନେବା ପାଇଁ କି ପ୍ରକାର ପଦ୍ଧତି ଅବଲମ୍ବନ କରୁଛନ୍ତି, କାର୍ଯ୍ୟର ସମୀକ୍ଷା କିପରି କରାଯାଏ ଓ କିଏ ଉତ୍ତରଦାୟୀ, କାର୍ଯ୍ୟ ସମ୍ପାଦନ ପାଇଁ କ'ଣ ନୀତି ନିର୍ଦ୍ଧାରଣ କରାଯାଇଛି, ନୀତି, ନିୟମ ଓ ନିର୍ଦ୍ଦେଶାବଳୀ କ'ଣ ରହିଛି, ଅଫିସର ଓ କର୍ମଚାରୀଙ୍କ ଡାଇରେକ୍ଟରୀ, କେଉଁ ଅଫିସର ଓ କର୍ମଚାରୀ ମାସିକ କେତେ ବେତନ ପାଉଛନ୍ତି, କେଉଁ ସଂସ୍ଥା ବା ପ୍ରକଳ୍ପ ଓ ଯୋଜନା ପାଇଁ କେତେ ବଜେଟ୍ ବ୍ୟବସ୍ଥା ହୋଇଛି ପ୍ରଭୃତି ୧୭ଟି ବିଷୟରେ ତଥ୍ୟ ପ୍ରକାଶ କରିବାକୁ ଏହି ଆଇନରେ ବ୍ୟବସ୍ଥା ରହିଛି ।

ପ୍ର. ସରକାରୀ ସଂସ୍ଥା ବ୍ୟତୀତ ଅନ୍ୟ ସଂସ୍ଥା ବା ସଂଗଠନଠାରୁ ତଥ୍ୟ ଜାଣି ହେବ କି ?

ଉ. ହଁ, ସରକାରୀ ସଂସ୍ଥା ବ୍ୟତୀତ ଅର୍ଦ୍ଧସରକାରୀ, ପୌର ଓ ପଞ୍ଚାୟତ ସଂସ୍ଥା, କେନ୍ଦ୍ର କିମ୍ବା ରାଜ୍ୟ ସରକାରଙ୍କଠାରୁ ଅନୁଦାନ ନେଉଥିବା ଘରୋଇ ସଂସ୍ଥା ଓ ସ୍ୱେଚ୍ଛାସେବୀ ସଂଗଠନମାନେ ସେମାନଙ୍କର କାର୍ଯ୍ୟାବଳୀ ସାଧାରଣରେ ପ୍ରକାଶ କରିବେ ।

ପ୍ର. ଜଣେ ସାଧାରଣ ଲୋକ ସରକାରୀ କଳର ଯେକୌଣସି ତଥ୍ୟ ଏହି ଆଇନ ବଳରେ ଜାଣିପାରିବେ କି ?

ଉ. ନା, ସବୁ ନୁହେଁ । ସୂଚନା ଅଧିକାର ଆଇନ-୨୦୦୫ର ଧାରା-୨୪(୧) ଅନୁଯାୟୀ କେତେକ ସଂଗଠନ ପ୍ରତି ଏହି ଅଧିନିୟମ ପ୍ରଯୁଜ୍ୟ ହେବ ନାହିଁ । ଏଥିପାଇଁ (Official Secrets Act-1923) ସରକାରୀ ଗୋପନୀୟତା ଅଧିନିୟମ - ୧୯୨୩ର ପ୍ରତିବନ୍ଧକ ରହିଥିଲାବେଳେ (Orissa Right to Information Rules-2005) ରାଜ୍ୟ ନିୟମାବଳୀର ଧାରା- ୮ ଓ ୯ର ମଧ୍ୟ ପ୍ରତିବନ୍ଧକ ରହିଛି । ପରନ୍ତୁ, ଭ୍ରଷ୍ଟାଚାର ଏବଂ ମାନବିକ ଅଧିକାରର ଉଲଂଘନ ସମ୍ବନ୍ଧୀୟ ସୂଚନା ଏହି ଆଇନ ଅନୁଯାୟୀ ବାଦ ଦିଆଯିବ ନାହିଁ । ଯେପରିକି କେନ୍ଦ୍ର ବା ରାଜ୍ୟ ନିରାପତ୍ତାକୁ ବ୍ୟାହତ କରୁଥିବା, ରାଜ୍ୟର ବୈଜ୍ଞାନିକ ଓ ଅର୍ଥନୈତିକ ସ୍ୱାର୍ଥ ଥିବା, ଅପରାଧ ଧରିବା ଓ ତଦନ୍ତ କରିବା, କ୍ୟାବିନେଟ କାଗଜ, ବାଣିଜ୍ୟ ଓ ବ୍ୟବସାୟ ଗୋପନୀୟତା ଏବଂ ସଂସଦ ତଥା ବିଧାନସଭାର ସ୍ୱାଧୀକାର ଭଙ୍ଗ କରୁଥିବା ବିଷୟରେ ତଥ୍ୟ ପ୍ରକାଶ କରାଯିବ ନାହିଁ ।

ପ୍ର. ଏହି ନିୟମ ଲାଗୁହେବା ପୂର୍ବରୁ ସୂଚନା ମିଳିବା କ'ଣ କଷ୍ଟସାଧ୍ୟ ଥିଲା ?

ଉ. ଲାଲ୍ ଫିତା ନୀତି ଏବଂ ଅସଚେତନ ଅମଲାତନ୍ତ୍ର ହିଁ ସରକାରଙ୍କ ପକ୍ଷରୁ ଲୋକଙ୍କ ନିକଟରେ ସୂଚନା ପହଞ୍ଚାଇବାରେ ପ୍ରତିବନ୍ଧକ ସୃଷ୍ଟି କରୁଥିଲା । 'ସରକାରୀ ଗୋପନୀୟତା ଅଧିନିୟମ' ଧାରା-୮ ଓ ୯ ଆଳରେ ସରକାରୀ କର୍ମଚାରୀମାନେ ଲୋକମାନଙ୍କୁ ସୂଚନା ଉପଲବ୍ଧ କରାଉନଥିଲେ ।

ପ୍ର. ଏହି ଆଇନ ଲାଗୁ କରିବାକୁ ପ୍ରଥମେ କିପରି ପ୍ରୟାସ କରାଗଲା ?

ଉ. ଗତ ଦଶନ୍ଧିରେ କିଛି ବ୍ୟକ୍ତି ଓ ରାଜନୈତିକ ବ୍ୟକ୍ତିମାନେ ଏପରି ଆଇନର ପ୍ରବର୍ତ୍ତନ ପାଇଁ ଦାବି କରି ଆସୁଥିଲେ । ଏପରି ଦାବି କରୁଥିବା କିଛି ବ୍ୟକ୍ତି ଏକାଠି ହୋଇ ଏକ ସଂସ୍ଥା ଗଠନ କରି ଏହି ଆଇନ ପ୍ରଣୟନ ପାଇଁ ଆନ୍ଦୋଳନ କରିଥିଲେ । ସମାଜସେବୀ ଅରୁଣା ରାୟ ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ଫଳତଃ ସୂଚନା ଅଧିକାର ବିଲ୍ ୨୦୦୦ ମସିହା ଜୁଲାଇ ୨୫ ତାରିଖରେ ଲୋକସଭାରେ ଆଗତ ହୋଇଥିଲା । ଏହି ବିଲ୍ ୨୦୦୨ ମସିହାରେ (Right to Information Act) ସୂଚନା ଅଧିକାର ଆଇନରେ ପରିଣତ ହୋଇଥିଲା । ମାତ୍ର ସାଧାରଣ ଜନତାଙ୍କ ନିକଟରେ ସୂଚନା ପହଞ୍ଚିବା ପାଇଁ ଏହି ଆଇନରେ କିଛି ପ୍ରତିବନ୍ଧକ ମଧ୍ୟ ରହିଥିଲା ।

ପ୍ର. ଏହା ଆମ ଜୀବନରେ ପରିବର୍ତ୍ତନ ଆଣିବ କି ?

ଉ. ବହୁତ ପରିବର୍ତ୍ତନ ଆଣିବ । ଠିକ୍ ଭାବେ ଏହି ଆଇନର ବ୍ୟବହାର କଲେ ଆମ ଜୀବନଶୈଳୀରେ ବେଶ୍ ପରିବର୍ତ୍ତନ ଆସିବ । ଆମେ କିପରି ଜୀବନ ନିର୍ବାହ କରୁ, ସାଧାରଣରେ ବ୍ୟବହାର କରୁ ଏବଂ ସରକାରୀ ଅର୍ଥ କିପରି କାର୍ଯ୍ୟରେ ଲାଗେ ଜାଣିପାରିବା । ଆପଣଙ୍କ କଳ୍ପନାକୁ ଆପଣ ବହୁତ ଦୂର ପର୍ଯ୍ୟନ୍ତ ବ୍ୟାପ୍ତ କରି ଏଥିରେ ସୃଷ୍ଟି ହେଉଥିବା ପ୍ରଶ୍ନ ସରକାରଙ୍କ ପାଖରେ ରଖିପାରନ୍ତି ଏବଂ ଏହାର ଉତ୍ତର ମଧ୍ୟ ପାଇପାରନ୍ତି ।

ପ୍ର. ଏହି ଆଇନ ଆମକୁ କିପରି ସାହାଯ୍ୟ କରିବ ?

ଉ. ପ୍ରଥମତଃ, ଗଣତନ୍ତ୍ରର ମୂଲ୍ୟବୋଧ ଓ ସମାଜର ଉନ୍ନତି କରିବା ସହ ଏହି ଆଇନ ଭାରତୀୟମାନଙ୍କୁ ବେଶ୍ ଶକ୍ତିଶାଳୀ କରିବ । କାରଣ ବର୍ତ୍ତମାନର ବିଶ୍ୱରେ ସୂଚନା ହିଁ ଶକ୍ତିର ଉତ୍ସ । ଦ୍ୱିତୀୟତଃ, ଏହି ଆଇନ ଦୁର୍ନୀତିର ମୂଳୋତ୍ପାଟନ କରିବାରେ ସାହାଯ୍ୟ କରିବ । କାରଣ ଦୁର୍ନୀତି ଗୋପନୀୟତାରୁ ହିଁ ସୃଷ୍ଟି ହୋଇଥାଏ ଏବଂ ଉତ୍ତରଦାୟିତ୍ୱ ଅଭାବରେ ଏହା ଦ୍ୱିଗୁଣିତ ହୋଇଥାଏ । ଯେତେବେଳେ ରାଜନେତା, ଅମଲାତନ୍ତ୍ରୀ ଓ ଠିକାଦାରମାନେ ଜାଣିବେ ଏହି ଆଇନ ଅନ୍ୟାୟର ମୁଖା ଖୋଲିଦେବ, ସେମାନେ ଦୁର୍ନୀତିକୁ ସ୍ପର୍ଶ କରିବାକୁ ଭୟ କରିବେ । ତୃତୀୟତଃ ଏହି ଆଇନ ନାଗରିକଙ୍କୁ ସବୁ ଦୃଷ୍ଟିରୁ ଅଧିକ ଶକ୍ତିଶାଳୀ କରି ଗୋଟିଏ ଗୋଟିଏ ସଚେତନଶୀଳ ନାଗରିକରେ ପରିଣତ କରିବ, ଯାହା ପ୍ରଗତିଶୀଳ ରାଷ୍ଟ୍ରଗଠନ ପାଇଁ ସହାୟକ ହେବ ।

ପ୍ର. ଏହି ଆଇନରୁ ସବୁଠାରୁ ଅଧିକ ସୁବିଧା କିଏ ପାଇବେ ?

ଉ. ସାଧାରଣ ନାଗରିକମାନେ । ତଥାପି ନିଶ୍ଚିତ ଭାବେ ସାମ୍ବାଦିକମାନେ । ସେମାନେ ଅଧିକ ଭଲ ଖବର ଛାପିବାକୁ ତଥ୍ୟ ପାଇପାରିବେ । ସେମାନେ ସରକାରଙ୍କ ତ୍ରୁଟିପୂର୍ଣ୍ଣ କାର୍ଯ୍ୟ ଓ ନିଷ୍ପତ୍ତି ବିଷୟରେ ଅବଗତ ହୋଇ ସରକାରଙ୍କ ସମ୍ମୁଖରେ ପ୍ରଶ୍ନ ଉତ୍ଥାପନ କରିବେ । ଗଣତନ୍ତ୍ରର ପ୍ରହରୀ ଭାବେ ଗଣମାଧ୍ୟମ ଅଧିକ ବଳଶାଳୀ ହେବା ଦ୍ୱାରା ଦୁର୍ନୀତି କମିବା

ସାଙ୍ଗକୁ ସାଧାରଣ ଲୋକେ ନିଜର ଅଧିକାର ଓ କର୍ତ୍ତବ୍ୟ ବିଷୟରେ ସଚେତନ ହୋଇପାରିବେ ।

ପ୍ର. ତଥ୍ୟ ଜାଣିବା ପାଇଁ କାହାକୁ ଏବଂ କିପରି ଆବେଦନ କରାଯିବ ?

ଉ. ତଥ୍ୟ ପାଇଁ ଆଗ୍ରହୀ ବ୍ୟକ୍ତି ଜଣକ ନିର୍ଦ୍ଦିଷ୍ଟ ଅଫିସରଙ୍କୁ ତଥ୍ୟ ପାଇବା ପାଇଁ ଲିଖିତ ଆବେଦନ କରିବେ । ଏଥିଲାଗି ପ୍ରତ୍ୟେକ ବିଭାଗ ନିଜ ନିଜ ବିଭାଗର ଜଣେ ଅଫିସରଙ୍କୁ ଲୋକ ସୂଚନା ଅଧିକାରୀ ଭାବେ ନିଯୁକ୍ତି ଦେଇଛନ୍ତି । ତାଙ୍କ ଅଧୀନରେ ବିଭିନ୍ନ ସ୍ଥାନରେ ଅନ୍ୟ ଅଫିସରମାନେ ସହକାରୀ ଲୋକ ସୂଚନା ଅଧିକାରୀ ଭାବେ କାର୍ଯ୍ୟ କରୁଛନ୍ତି । ଆବେଦନକାରୀ ଜଣକ ଆଇନ ବ୍ୟବସ୍ଥା ଅନୁଯାୟୀ ଯେଉଁ ତଥ୍ୟ ଜାଣିବାକୁ ହକ୍‌ଦାର ତାହା ସର୍ବନିମ୍ନ ୩୦ ଦିନ ଓ ସର୍ବୋଚ୍ଚ ୪୦ ଦିନ ଭିତରେ ଏହି ଅଧିକାରୀମାନେ ଯୋଗାଇ ଦେବେ । ଏଥିପାଇଁ 'ଓଡ଼ିଶା ସୂଚନା ଅଧିକାର ନିୟମାବଳୀ'-୨୦୦୫ର ନିୟମ-୪(୧), ଫର୍ମ-କ ତଥା ଅଧିନିୟମର ଧାରା-୬(୧) ଅନୁଯାୟୀ ଫର୍ମ ଯୋଗାଇ ଦିଆଯାଇଛି । (ଅବଶ୍ୟ ଏଥିପାଇଁ ଆବଶ୍ୟକ ମୁତାବକ ଫିସ୍ ବାବଦକୁ ଏହି ସଂଖ୍ୟାରେ (0070-Other Administrative Services-60 - Other Services - 101 - Receipt from Central Government for Administration of Central Acts and Regulations-9916710 - Fees and Fines under Right to Information Act-2005) ଟ୍ରେଜେରୀ-ଚାଲାଣ ବା ନଗଦ ଅର୍ଥ ପ୍ରଦାନ କରି ଲୋକ ସୂଚନା ଅଧିକାରୀଙ୍କୁ ଫର୍ମ 'କ'ରେ ଆବେଦନ କରିବେ) ।

ପ୍ର. ଲୋକ ସୂଚନା ଅଧିକାରୀ ତଥ୍ୟ ଯୋଗାଣରେ ଅବହେଳା କଲେ ?

ଉ. ଲୋକ ସୂଚନା ଅଧିକାରୀ ଆଇନକୁ କାର୍ଯ୍ୟକାରୀ ନକଲେ ବା ଧାର୍ଯ୍ୟ ସମୟରେ ତଥ୍ୟ ପ୍ରଦାନ ନକଲେ, ସଂପୃକ୍ତ ଅଧିକାରୀଙ୍କ ବିରୁଦ୍ଧରେ ତାଙ୍କ ଉପରସ୍ଥ ଅଫିସରଙ୍କ ନିକଟରେ ଆପତ୍ତି କରାଯିବା ସହିତ ଦୈନିକ ୨୫୦ ଟଙ୍କା ଏବଂ ସର୍ବୋଚ୍ଚ ୨୫୦୦୦/- ଟଙ୍କା (ପଚିଶ ହଜାର ଟଙ୍କା) ପର୍ଯ୍ୟନ୍ତ ଜୋରିମାନା ଆଦାୟର ମଧ ବ୍ୟବସ୍ଥା ରହିଛି । ଏହାବ୍ୟତୀତ ସମ୍ପୃକ୍ତ ଅଫିସରଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ନିମନ୍ତେ ମଧ ରାଜ୍ୟ ସୂଚନା କମିଶନ ସୁପାରିଶ କରିପାରିବ ।

ପ୍ର. ତଥ୍ୟ ଜାଣିବା ପାଇଁ ଲୋକଙ୍କୁ ରିହାତି ବ୍ୟବସ୍ଥା ଅଛି କି ?

ଉ. ହଁ । ତଥ୍ୟ ଜାଣିବାକୁ ଚାହୁଁଥିବା ବ୍ୟକ୍ତି ଯଦି ବି.ପି.ଏଲ୍. ତାଲିକାଧାରୀ ହୋଇଥିବେ, ତେବେ ତାଙ୍କଠାରୁ ଆବେଦନ ଓ ଅପିଲ୍ ଫି' ନିଆଯିବ ନାହିଁ କିନ୍ତୁ ସେଥିପାଇଁ ବି.ପି.ଏଲ୍. କାର୍ଡ଼ ଦାଖଲ କରିବାକୁ ପଡ଼ିବ ।

ପ୍ର. ସୂଚନା ଜାଣିବା ପାଇଁ ମୂଲ୍ୟର ଆବଶ୍ୟକତା ଅଛି କି ?

ଉ. ହଁ । ସରକାର ଏଥିପାଇଁ ଏକ ନିୟମାବଳୀ ପ୍ରଣୟନ କରିଛନ୍ତି । ଦରଖାସ୍ତ ଫି' ବାବଦକୁ ୧୦ ଟଙ୍କା ଏବଂ ଏ-୪/ଏ-୩ ଆକାରର ପ୍ରତି ପୃଷ୍ଠା ପାଇଁ ଦୁଇଟଙ୍କା ଦେୟ ଦେବାକୁ ପଡ଼ିବ । କମ୍ପ୍ୟୁଟର ଫ୍ଲପି ବା ସିଡିରେ ନେଲେ ୫୦ ଟଙ୍କା ଦେବାକୁ ହେବ । କେହି ବ୍ୟକ୍ତି ଯଦି କେବଳ ରେକର୍ଡ଼ ଦେଖିବା ପାଇଁ ଚାହାଁନ୍ତି, ତା'ହେଲେ ଏକ ଘଣ୍ଟା ପର୍ଯ୍ୟନ୍ତ ମାଗଣାରେ ଦେଖିପାରିବେ । ତା'ପରେ ପ୍ରତି ପନ୍ଦର ମିନିଟ୍ ପାଇଁ ପାଞ୍ଚ ଟଙ୍କା ଲେଖାଏଁ ଦେବାକୁ ହେବ । ଏଥିପାଇଁ ଫି' ବାବଦକୁ ଟ୍ରେଜେରି ଚାଲାଣ ବା ନଗଦ ଅର୍ଥ ପ୍ରଦାନ କରି ରସିଦ୍ ନେବାକୁ ହୁଏ ।

ପ୍ର. ଆୟୋଗ ଚାହିଁଲେ ଆବେଦନ ପତ୍ରକୁ ନାକଚ କରିପାରିବେ କି ?

ଉ. ହଁ, କେନ୍ଦ୍ରୀୟ ବା ରାଜ୍ୟ ସୂଚନା ଅଧିକାରୀ ଏହି ଆବେଦନକୁ ଧାରା-୭ର ଉପାଧାରା (୧) ଅନୁଯାୟୀ ନାକଚ କରିଦେଇ ପାରିବେ କିନ୍ତୁ ନାକଚର କାରଣ, କେତେ ଦିନର ଅବଧି ମଧ୍ୟରେ ଏହି ଅଗ୍ରାହ୍ୟ ବିରୁଦ୍ଧରେ ଅପିଲ୍ କରାଯିବ ଏବଂ ଅପିଲ୍ କର୍ତ୍ତୃପକ୍ଷଙ୍କ ସବିଶେଷ ବିବରଣୀ ଇତ୍ୟାଦି ନିର୍ଦ୍ଦିଷ୍ଟ ଦିନ ମଧ୍ୟରେ ଜଣାଇବାକୁ ବାଧ୍ୟ ।

ପ୍ର. ଏ ସମସ୍ତ କାର୍ଯ୍ୟ ତଦାରଖ ପାଇଁ ସରକାର କି ପ୍ରକାର ପଦକ୍ଷେପ ନେଇଛନ୍ତି ?

ଉ. ଏ ସମସ୍ତ କାର୍ଯ୍ୟ ତଦାରଖ ପାଇଁ ସରକାର ଜାତୀୟ ସ୍ତରରେ ଜାତୀୟ ସୂଚନା ଆୟୋଗ ଓ ପ୍ରାଦେଶିକ ସ୍ତରରେ ଅନୁରୂପ ସଂସ୍ଥା ଗଠନ କରି ଲୋକଙ୍କୁ ସରକାରୀ କଳର ତଥ୍ୟ ପ୍ରଦାନ କରୁଛନ୍ତି । ଏହି ସଂସ୍ଥା ଯେପରି ନିରଙ୍କୁଶ ଭାବେ କାର୍ଯ୍ୟ କରିବ ସେଥିପାଇଁ କୌଣସି ସରକାରୀ ଅଫିସର୍, ଲୋକ ପ୍ରତିନିଧି ଏହି ପଦବୀରେ ରହିବେ ନାହିଁ ବୋଲି ଆଇନ ହୋଇଛି । ଆଇନ, ପ୍ରଶାସନ, ଖବର ଓ ସାମାଜିକ କଲ୍ୟାଣ ପ୍ରଭୃତି କ୍ଷେତ୍ରରେ ଅଭିଜ୍ଞତା ଥିବା ବ୍ୟକ୍ତିମାନଙ୍କୁ ଏଥିରେ ନିଯୁକ୍ତି କରାଯାଇଛି ଏବଂ ଉକ୍ତ ଅଧିକାରୀମାନଙ୍କୁ କାର୍ଯ୍ୟରେ ସହଯୋଗ କରିବା ପାଇଁ ସରକାର ଆବଶ୍ୟକ କର୍ମଚାରୀ ଯୋଗାଇ ଦେଇଛନ୍ତି ।

ମାନବିକ ଅଧିକାର ସୁରକ୍ଷାକର୍ମୀ
ଆଇନଜୀବୀ ତଥା ଆମ ଅଧିକାର ସଂଗଠନର
କାର୍ଯ୍ୟନିର୍ବାହୀ ନିର୍ଦ୍ଦେଶକ, ଭୁବନେଶ୍ୱର

# ସୂଚନା ଆବେଦନ କରିବା କିପରି

ନିରୁପମା ରଥ

**ଆ**ଇନଟିଏ । କିଏ କହୁଛି ତାକୁ ଗରିବର ଭଗବାନ, ଆଶାର ଆଲୋକ । କିଏ କହୁଛି ଅମୋଘ ଅସ୍ତ୍ର, ସୂର୍ଯ୍ୟାଲୋକ ଏବଂ କିଏ କହିଲାଣି ଦେବଦୂତ ଭଳି ଆସିଛି, ଦୁର୍ନୀତିର ଚେର କାଟିବାକୁ । କିଏ କହୁଛି ଅପୂର୍ବ ଅଧିକାର ଶାସନକୁ ସ୍ୱଚ୍ଛ କରିବାକୁ । ଆଉ କେତେକ କହୁଛନ୍ତି ଆଇନ୍ ନୁହେଁ ତ କାଳ ଆସିଛି । କିଏ କେତେ ଢଙ୍ଗରେ, ଆବେଗରେ ଏମିତି ନାଁ ପରେ ନାଁ ଦେଇ ଚାଲିଛନ୍ତି । ଅନ୍ୟ ପକ୍ଷରେ ଧୀରେ ଧୀରେ ଏହାର ଶକ୍ତି ସାଧାରଣ ନାଗରିକଙ୍କୁ ଆପଣେଇ ନେଲାପରି ମନେ ହେଉଥିଲାବେଳେ ସରକାରୀ ମହଲରେ କୋକୁଆ ଭୟ ସହ ଚାପ ସୃଷ୍ଟି ହେଉଛି । କେତେଜଣ ସୁଫଳ ପାଇଲା ପରେ ଏହି ଆଇନ୍‌ର ବାର୍ତ୍ତାକୁ ଅନ୍ୟମାନଙ୍କ ପାଖରେ ପହଞ୍ଚାଇବା ପାଇଁ ସଂକଳ୍ପ କଲେଣି ତ, କେହି ଅଣ୍ଟା ଭିଡ଼ି ଆଗକୁ ବାହାରିଲେଣି । ଯାହାର ନାମ ଶୁଣୁଶୁଣୁ ରାସ୍ତା କାମରେ ଖଇଚା କରିଥିବା ଇଂଜିନିୟର କାମ ଆରମ୍ଭ କଲାଣି ତ କେଉଁଠି ବର୍ଷ ବର୍ଷ ଧରି ହଡ଼ପ ହେଉଥିବା ବି.ପି.ଏଲ୍. ଚାଉଳ ଆଦିବାସୀ ବିଧବା ଦୁଆରେ ଥୁଆ ହେଲାଣି । କେଉଁଠି ଅବହେଳିତ ହରିଜନ ମହିଳାର ୧୫ ବର୍ଷର ବକେୟା ପେନ୍‌ସନ୍ ଯାଚି ଦିଆଗଲାଣି, କେଉଁଠି ମଷ୍ଟର ରୋଲ୍‌ରେ ଜାଲିଆତି ଶ୍ରମିକଙ୍କୁ ନଗଦାନଗଦ କାମ ମିଳିଲାଣି - ଏମିତି କେତେ କେତେ ଅଙ୍ଗେନିଭା, ଆଖିଦେଖା କଥା ଘଟିଲାଣି । ଏସବୁ କେବଳ ସମ୍ଭବ ହୋଇଛି ସୂଚନା ଅଧିକାର ଆଇନ ବଳରେ । ଏଣିକି ଆଉ କିଛି ଲୁଚା ଛପା ନାହିଁକି କୌଣସି କାମ ପାଇଁ ଲାଞ୍ଚ, ହାତଗୁଞ୍ଜା ଦେବାକୁ ପଡ଼ିବ ନାହିଁ । ଏହି ଅଧିକାର ଆଇନ୍‌ଟି ଆମ ଦେଶରେ ୧୨ ଅକ୍ଟୋବର, ୨୦୦୫ରୁ ଲାଗୁ ହେଲାଣି । କିଛି ଲୋକ ଏହି ଅପୂର୍ବ ନୂଆ ଅଧିକାରକୁ ବ୍ୟବହାରରେ ଲଗାଇବା ଆରମ୍ଭ କରି ଫଳାଫଳ ପାଇଲେଣି । କେତେଜଣ ଜିତିଛନ୍ତି, ଆଉ କେତେଜଣ ଜିତିବା ବାଟରେ ଅଛନ୍ତି । ଆଉ କିଛି ସୂଚନା ପାଇବା ପାଇଁ କିପରି ଆବେଦନ କରିବାକୁ ହେବ, ତାହା ଜାଣିନଥିବାରୁ ଚାହୁଁଥିବା ସୂଚନା ପାଇବାରୁ ହଇରାଣ ହୋଇଛନ୍ତି । ତେବେ ଏଥିରେ ନିରାଶା ହେବାର କୌଣସି କାରଣ ନାହିଁ । କୌଣସି ସୂଚନା ପାଇଁ କିପରି ଆବେଦନ କରିବାକୁ ହେବ ସେ ସଂପର୍କରେ ସମସ୍ତ ନାଗରିକ ଜାଣିବା ନିହାତି ଜରୁରି । ସୂଚନା ପାଇବା ପାଇଁ ଦୁଇଟି ବ୍ୟବସ୍ଥା ରହିଛି । ପ୍ରଥମଟି ହେଲା ଆଇନ୍‌ର ୪ର୍ଥ ଧାରା ଅନୁସାରେ ପ୍ରତି କର୍ତ୍ତୃପକ୍ଷଙ୍କ ଦପ୍ତରଠାରୁ ବିନା ଫି ଓ ବିନା ଆବେଦନରେ ୧୭ଟି ବିଷୟର ସୂଚନା, ଅନ୍ୟଟି ହେଲା ବାଧତାମୂଳକ ଫି ଓ ଲିଖିତ ଆବେଦନ ମାଧ୍ୟମରେ ସୂଚନା ।

ଜଣେ ନାଗରିକ ଭାବେ ଆପଣ ଯଦି କୌଣସି ସରକାରୀ ବିଭାଗରୁ ସୂଚନା ପାଇବାକୁ ଚାହୁଁଛନ୍ତି ମାତ୍ର ଏହି ସୂଚନାଟି ଆଇନ୍‌ର ୪ର୍ଥ ଧାରା ଅନ୍ତର୍ଗତ ନୁହେଁ, ତେବେ କ'ଣ କରିବେ ? ମନେ କରାଯାଉ, ଆପଣ ଆପଣଙ୍କ ସ୍ଥାନୀୟ ସାଂସଦଙ୍କ ଆଞ୍ଚଳିକ ବିକାଶ ପାଣ୍ଠି ଅର୍ଥ କେଉଁ ବାଟରେ କିପରି ଓ କେତେ ଖର୍ଚ୍ଚ ହୋଇଛି କିମ୍ବା ଆପଣଙ୍କ ପାଖ ଅଞ୍ଚଳର ରାସ୍ତା/ଡ୍ରେନ୍ ମରାମତି ପାଇଁ କେତେଟଙ୍କା ଖର୍ଚ୍ଚ ହୋଇଛି କିମ୍ବା ଆପଣ କେନ୍ଦ୍ର ସରକାରଙ୍କ କୌଣସି ମନ୍ତ୍ରଣାଳୟରୁ କୌଣସି ଚୁକ୍ତିର ଏକ ନକଲ ଦେଖିବାକୁ ଚାହୁଁଛନ୍ତି, ତେବେ ସୂଚନା ଅଧିକାର ବଳରେ ଆପଣ ସଂପୃକ୍ତ ଜନ କର୍ତ୍ତୃପକ୍ଷଙ୍କୁ ଲିଖିତ ଆବେଦନ କରି ଏସବୁର ସୂଚନା ପାଇପାରିବେ । ଏଥିପାଇଁ ଆପଣଙ୍କୁ ପାଞ୍ଚଟି ପାହାଚ ଦେଇ ଯିବାକୁ ହେବ । ଆସନ୍ତୁ ଜାଣିବା, ସେହି ପାହାଚଗୁଡ଼ିକ କ'ଣ ?

### ପହିଲି ପାହାଚ : କେଉଁଠାରୁ ସୂଚନା ମିଳିବ ଠାବ କରନ୍ତୁ

କେମିତି ଓ କେଉଁଭଳି ପଚାରିଲେ ଆପଣଙ୍କ ସମସ୍ୟା ବୁଝାପଡ଼ିବ, ସେମିତି କେତୋଟି ପ୍ରଶ୍ନ ତିଆରି କରନ୍ତୁ । ଆପଣ ଯେଉଁ ସୂଚନାଟି ଚାହୁଁଛନ୍ତି, ତାହା ସରକାରଙ୍କ କେଉଁ ବିଭାଗ/ଦପ୍ତର/ସଂସ୍ଥାର କର୍ତ୍ତୃପକ୍ଷଙ୍କ ପାଖରେ ମିଳିପାରିବ, ତାହାକୁ ପ୍ରଥମେ ଚିହ୍ନଟ କରନ୍ତୁ । ଯଦି ଏ ସଂପର୍କରେ ସଠିକ୍ ଭାବେ ଜାଣିପାରୁନାହାନ୍ତି, ତାହା ହେଲେ ଯେଉଁଠି ମିଳିବାର ସମ୍ଭାବନା ରହିଛି, ସେସବୁର ଏକ ତାଲିକା କରନ୍ତୁ । ତା'ପରେ ଏଥିମଧ୍ୟରୁ ସବୁଠାରୁ ଭଲକରି ଜାଣିଥିବା ଗୋଟିକୁ ବାଛନ୍ତୁ । କାଳେ ଏହା ଭୁଲ୍ ହୋଇଯିବ ଭାବି ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । କାରଣ ସୂଚନା ଅଧିକାର ବଳରେ ଆପଣ ଯଦି ଆପଣଙ୍କ ସୂଚନା ସମ୍ବନ୍ଧୀୟ କର୍ତ୍ତୃପକ୍ଷଙ୍କୁ ଆବେଦନ ନକରି ଭୁଲ୍‌ବଶତଃ ଆଉ କେଉଁ କର୍ତ୍ତୃପକ୍ଷଙ୍କୁ ଆବେଦନ କରି ଦେଇଛନ୍ତି, ତେବେ ସେହି କର୍ତ୍ତୃପକ୍ଷ ଆପଣଙ୍କ ଆବେଦନ ଫର୍ମ ଫେରାଇ ଦେବେ ନାହିଁ । ଏହା ପରିବର୍ତ୍ତେ

ସେ ସଠିକ୍ କର୍ତ୍ତୃପକ୍ଷଙ୍କୁ ୫ ଦିନ ମଧ୍ୟରେ ପଠାଇ ଦେବେ ଏବଂ ଏହା ସେ କେଉଁ କର୍ତ୍ତୃପକ୍ଷଙ୍କୁ ବିଚାର ପାଇଁ ପଠାଇଲେ, ସେ ସମ୍ପର୍କରେ ଲିଖିତ ଭାବେ ଆପଣଙ୍କୁ ଜଣାଇବେ । ତା'ପରେ ୩୦ ଦିନ ମଧ୍ୟରେ ଦ୍ୱିତୀୟ କର୍ତ୍ତୃପକ୍ଷ ଆପଣ ମାଗିଥିବା ସୂଚନା ଯୋଗାଇ ଦେବା ପାଇଁ ଦାୟୀ ରହିବେ ।

**ମନେ ରଖନ୍ତୁ :** ଗୋଟିଏ ଆବେଦନରେ କେତୋଟି ପ୍ରଶ୍ନ ପଚରାଯିବ, ସେ ସମ୍ପର୍କରେ ଆଇନ୍‌ରେ କିଛି ନିର୍ଦ୍ଦିଷ୍ଟ କରାଯାଇ ନାହିଁ । ତେଣୁ ଗୋଟିଏ ଆବେଦନରେ ନିର୍ଦ୍ଦିଷ୍ଟ ସୂଚନା ପାଇଁ ଯେତୋଟି ପ୍ରଶ୍ନ ପଚାରି ପାରିବେ, ହୁଏତ ଏହା ୧ରୁ ୬୦ ହୋଇପାରେ ।

ଉଦାହରଣ ସ୍ୱରୂପ ଆପଣ ରହୁଥିବା କଲୋନୀ ବା ପାଖ କଲୋନୀର ଗଳିରାସ୍ତା ତିଆରି କିମ୍ବା ମରାମତି କାମ ପାଇଁ କେତେ ଟଙ୍କା ବ୍ୟୟ ବରାଦ ହୋଇଛି, ତାହା ଯଦି ଜାଣିବାକୁ ଚାହୁଁଛନ୍ତି ତେବେ ଏଥିପାଇଁ ମ୍ୟୁନିସିପାଲ୍ କର୍ପୋରେସନଙ୍କୁ ଆବେଦନ କରିବାକୁ ହେବ, ଯଦି ଆପଣ ଜାଣି ନପାରି ବି.ଡି.ଏ. କିମ୍ବା ନଗର ଉନ୍ନୟନ ବିଭାଗକୁ ପଠାଇ ଦେଇଛନ୍ତି, ତେବେ ଏହା ନିଶ୍ଚୟ ମ୍ୟୁନିସିପାଲ୍ କର୍ପୋରେସନକୁ ପୂର୍ବୋକ୍ତ ଲୋକ ସୂଚନା ଅଧିକାରୀ ପଠାଇବେ ।

ସେହିପରି ଆପଣ ନୂଆ ବିଦ୍ୟୁତ ସଂଯୋଗ ପାଇଁ ବହୁଦିନ ହେଲା ଆବେଦନ କରିଛନ୍ତି । ଏହାର ପ୍ରଗତି କ'ଣ ହୋଇଛି ସେ ସଂପର୍କରେ ଜାଣିବାକୁ ଚାହୁଁଛନ୍ତି, ତେବେ ଆପଣଙ୍କୁ ନିକଟସ୍ଥ ବିଦ୍ୟୁତ୍ ବିଭାଗକୁ ଆବେଦନ କରିବାକୁ ହେବ । ସେହିପରି ନିକଟସ୍ଥ ସ୍ୱାସ୍ଥ୍ୟ କେନ୍ଦ୍ରରେ କେଉଁ ସେବା ବିନାମୂଲ୍ୟରେ ଉପଲବ୍ଧ, ତାହା ଜାଣିବାକୁ ଚାହିଁଲେ, ସେ ସମ୍ପର୍କିତ ଆବେଦନଟିକୁ ସ୍ୱାସ୍ଥ୍ୟ ବିଭାଗରେ ଦାଖଲ କରିବାକୁ ହେବ ।

### ଦ୍ୱିତୀୟ ପାହାଚ : କାହା ପାଖରେ ଆବେଦନ ଦାଖଲ କରିବେ ବୁଝି ନିଅନ୍ତୁ

ପ୍ରଥମ ପାହାଚ ଡେଇଁଲା ପରେ ଆପଣ ବର୍ତ୍ତମାନ କେଉଁ ଲୋକ ସୂଚନା ଅଧିକାରୀଙ୍କ ପାଖରେ ଆବେଦନ ଦାଖଲ କରିବେ, ତାହା ସ୍ଥିର କରନ୍ତୁ । ଏଥିପାଇଁ ଆପଣ ବିଭିନ୍ନ ବିଭାଗ / ସଂସ୍ଥାର ସହକାରୀ ଲୋକ ସୂଚନା ଅଧିକାରୀ / ଲୋକ ସୂଚନା ଅଧିକାରୀ (ଏ.ପି.ଆଇ.ଓ. ଏବଂ ପି.ଆଇ.ଓ.)ମାନଙ୍କର ଏକ ତାଲିକା ୱେବ୍‌ସାଇଟ୍‌ରୁ ସଂଗ୍ରହ କରନ୍ତୁ କିମ୍ବା ସଂପୃକ୍ତ ବିଭାଗ ସହିତ ସିଧାସଳଖ ଯୋଗାଯୋଗ କରି ବୁଝି ନିଅନ୍ତୁ । ଏ ସଂପର୍କୀୟ ଆବଶ୍ୟକୀୟ ପରାମର୍ଶ ମାଗନ୍ତୁ । କାରଣ ଏ କ୍ଷେତ୍ରରେ ପ୍ରତ୍ୟେକ ବିଭାଗ ନିଜର ଅବସ୍ଥାପିତ ଲୋକ ସୂଚନା ଅଧିକାରୀ ଓ ସହକାରୀ ଲୋକ ସୂଚନା ଅଧିକାରୀଙ୍କ ନାମ, ପଦବୀ, ଟେଲିଫୋନ୍ ନମ୍ବର କମ୍ପ୍ୟୁଟରରେ କିମ୍ବା ମୁଦ୍ରିତ ଆକାରରେ ରଖିବାକୁ ଆଇନ୍‌ରେ ନିର୍ଦ୍ଦେଶ ଅଛି । ଆପଣ ଲୋକ ସୂଚନା ଅଧିକାରୀଙ୍କ ନାମ, ଠିକଣା ଲେଖି ରଖିବା ପରେ ସହକାରୀ ଲୋକ ସୂଚନା ଅଧିକାରୀଙ୍କ ପାଖରେ ଆବେଦନ ଦାଖଲ କରନ୍ତୁ । ହୁଏତ, ଆପଣଙ୍କୁ ସୂଚନା ଯୋଗାଇ ଦେବା ପାଇଁ ତାଙ୍କୁ ୩୦ରୁ ୩୫ ଦିନ ସମୟ ଲାଗିଯାଇପାରେ । ଏଥିପାଇଁ ଅପେକ୍ଷା କରନ୍ତୁ ।

ପ୍ରତ୍ୟେକ କର୍ତ୍ତୃପକ୍ଷ ନିଜ ସଂସ୍ଥାରେ ଲୋକ ସୂଚନା ଅଧିକାରୀମାନଙ୍କୁ ଆବେଦନ ଗ୍ରହଣ କରିବା ସହ ପରବର୍ତ୍ତୀ କାର୍ଯ୍ୟକୁ ଆଗେଇ ନେବା ନିମନ୍ତେ ନିଯୁକ୍ତି ଦେବାକୁ ଆଇନ୍‌ରେ ନିର୍ଦ୍ଦେଶ ଅଛି । କିନ୍ତୁ ବାସ୍ତବ କ୍ଷେତ୍ରରେ ଦେଖାଯାଉଛି ଯେ କେତେକ କର୍ତ୍ତୃପକ୍ଷ ଆଜିଯାଏଁ ତାଙ୍କ ବିଭାଗ/ଦପ୍ତରରେ ଲୋକ ସୂଚନା ଅଧିକାରୀଙ୍କୁ ନିଯୁକ୍ତି କରିନାହାନ୍ତି । ଏହି କାରଣରୁ ତାଙ୍କ ପାଖରେ ପହଞ୍ଚୁଥିବା ଆବେଦନ ଗ୍ରହଣ କରିବାକୁ ମନା କରିଦେଉଛନ୍ତି । ଯଦି ଆପଣଙ୍କ କ୍ଷେତ୍ରରେ ଏଭଳି ଘଟେ, ତା'ହେଲେ କେନ୍ଦ୍ର ବା ରାଜ୍ୟ ସୂଚନା କମିଶନଙ୍କୁ ସିଧାସଳଖ ଅଭିଯୋଗ କରନ୍ତୁ । ହୁଏତ ଆପଣଙ୍କ ଅଭିଯୋଗ ପାଇଲା ପରେ କମିଶନ ସଂପୃକ୍ତ ଆଇନ ଉଲଂଘନକାରୀ କର୍ତ୍ତୃପକ୍ଷଙ୍କୁ ଲୋକ ସୂଚନା ଅଧିକାରୀ ନିଯୁକ୍ତି ପାଇଁ ଦାବୀ କରିପାରିବେ କିମ୍ବା ଏଭଳି କ୍ଷେତ୍ରରେ ଯେଉଁଠି ନିହାତି ଆବଶ୍ୟକ ସେଠାରେ ମଧ୍ୟ ଲୋକ ସୂଚନା ଅଧିକାରୀଙ୍କୁ ନିଯୁକ୍ତି ଦେଇପାରିବେ ।

### ତୃତୀୟ ପାହାଚ : ଆବେଦନପତ୍ର ଲେଖନ୍ତୁ

ଆପଣ ଯେଉଁ ସୂଚନା ଚାହୁଁଛନ୍ତି ତାହା ସ୍ଥିର କରନ୍ତୁ । ସାଦା କାଗଜରେ ଲିଖିତ ଭାବେ ବା ଇଲେକ୍‌ଟ୍ରୋନିକ୍ସ ମାଧ୍ୟମରେ ଆପଣ ସୂଚନା ପାଇଁ ଆବେଦନ କରିପାରିବେ । ଆପଣ ଇଂରାଜୀ, ହିନ୍ଦୀ କିମ୍ବା ଆଞ୍ଚଳିକ ସରକାରୀ ଭାଷାରେ ଆବେଦନ କରିପାରିବେ । ଆପଣ ଲେଖା ଆରମ୍ଭ କରିବା ପୂର୍ବରୁ ପ୍ରଥମେ ଏକ ଅଲଗା କାଗଜରେ ଆବେଦନଟି ଲେଖନ୍ତୁ । ତାହା ଯେପରି ସ୍ୱଷ୍ଟ, ପ୍ରାଞ୍ଜଳ ହୁଏ ସେଥିପ୍ରତି ଧ୍ୟାନ ଦିଅନ୍ତୁ । ଲେଖାଟି ନିର୍ଭୁଲ୍ ଓ ସନ୍ତୋଷଜନକ ହେଲା ପରେ ଅସଲ ଆବେଦନଟି ଲେଖନ୍ତୁ, ଯେତେଦୂର ସମ୍ଭବ ଅଯଥା କାଗଜପତ୍ରର ବୋଝକୁ ଏଡାଇବାକୁ ଚେଷ୍ଟା କରନ୍ତୁ । ଯଦ୍ୱାରାକି ଆପଣ ଚାହୁଁଥିବା ନିର୍ଦ୍ଦିଷ୍ଟ ସୂଚନା ପାଇବା ସହ ଅଯଥା ଖର୍ଚ୍ଚାନ୍ତରୁ ରକ୍ଷା ପାଇବେ ଏବଂ ଲୋକ ସୂଚନା ଅଧିକାରୀ ଅସ୍ୱଷ୍ଟତାର ଆଳ ଦେଖାଇ ଆପଣଙ୍କ ଆବେଦନକୁ ଅଗ୍ରାହ୍ୟ କରିବାର ସୁଯୋଗ ପାଇବେ ନାହିଁ ।

**ମନେ ରଖନ୍ତୁ :** ଆପଣ କାହିଁକି ସୂଚନା ମାଗୁଛନ୍ତି, ସେ ବିଷୟରେ ଲୋକ ସୂଚନା ଅଧିକାରୀ ଆପଣଙ୍କୁ ପଚାରି ପାରିବେ ନାହିଁ କି ଆପଣ କାହିଁକି ନେଉଛନ୍ତି ତାହା କହିବା ବା ଲେଖିବା ଦରକାର ନାହିଁ । କୌଣସି କାରଣ ନଦର୍ଶାଇ ଆପଣ ଯେକୌଣସି ପ୍ରକାରର ସୂଚନା ପାଇଁ ଆବେଦନ କରିପାରିବେ । କାରଣ ସୂଚନା ପାଇବା ଆପଣଙ୍କର ଅଧିକାର ଏବଂ ଏହି ଅଧିକାର ବଳରେ ଗୋପନୀୟତା ବୋଲି କିଛି ନାହିଁ ।

**ଚତୁର୍ଥ ପାହାଚ : ଆବେଦନ ଦାଖଲ କରନ୍ତୁ**

ଆବେଦନପତ୍ରଟି ଲେଖିସାରି, ଆପଣ ଯେଉଁ ବିଭାଗ/ ସଂସ୍ଥାଠାରୁ ସୂଚନା ଚାହୁଁଛନ୍ତି, ସେହି ବିଭାଗର ଜନସୂଚନା ଅଧିକାରୀଙ୍କ ପାଖକୁ ପଠାଇ ଦିଅନ୍ତୁ । ବ୍ଲକ୍ ବା ସବ୍‌ଡିଭିଜନ୍ ସ୍ତରରେ ଥିବା ସହକାରୀ ଲୋକ ସୂଚନା ଅଧିକାରୀ, ଆପଣଙ୍କ ଆବେଦନକୁ ଯଥାଯଥ ଲୋକ ସୂଚନା ଅଧିକାରୀଙ୍କୁ ପଠାଇବେ । ତାଙ୍କ ପାଖରେ ମଧ ଆପଣ ଫର୍ମ ଦାଖଲ କରିପାରନ୍ତି । ଆପଣ ଆବେଦନଟିକୁ ବ୍ୟକ୍ତିଗତ, ଡାକ, ଫ୍ୟାକ୍ସ କିମ୍ବା ଇ-ମେଲ୍ ଯୋଗେ ପଠାଇ ପାରିବେ । ଯଦି ଆପଣ ଡାକଯୋଗେ ପଠାଉଥାନ୍ତି, ତେବେ ରେଜିଷ୍ଟ୍ରି କିମ୍ବା ୟୁସିପି ଡାକରେ ପଠାଇବା ଭଲ । ଯଦ୍ଦ୍ୱାରାକି ଆପଣ ସୂଚନା ଆବେଦନ ପଠାଇଛନ୍ତି ବୋଲି ବଳିଷ୍ଠ ପ୍ରମାଣ ରହିବା ସହ ଲୋକ ସୂଚନା ଅଧିକାରୀ ଆବେଦନପତ୍ର ପାଇ ନାହାନ୍ତି ବୋଲି ଫାଙ୍କି ଦେବାକୁ ଆଉ ବାଟ ନଥିବ । ଯଦି ଆପଣ ବ୍ୟକ୍ତିଗତ ଭାବେ ଲୋକ ସୂଚନା ଅଧିକାରୀ/ ସହକାରୀ ଲୋକ ସୂଚନା ଅଧିକାରୀଙ୍କ ପାଖରେ ଆବେଦନ ଦାଖଲ କରିଥା'ନ୍ତି, ତେବେ ତାଙ୍କଠାରୁ ଆବେଦନପ୍ରାପ୍ତି ସ୍ୱୀକାର ରସିଦଟି ନିଶ୍ଚୟ ଆଣନ୍ତୁ ।

ସୂଚନା ଆବେଦନଟି ଦାଖଲ କରିବା ପୂର୍ବରୁ ଆପଣଙ୍କୁ ନିଶ୍ଚୟ ସରକାରଙ୍କ ଦ୍ୱାରା ସ୍ଥିରୀକୃତ ଫି ଦାଖଲ କରିବାକୁ ହେବ । ତେବେ ସୂଚନାର ପ୍ରକାରଭେଦ ଯେପରିକି ଫଟୋକପି, ସିଡି, ଫ୍ଲପି ଇତ୍ୟାଦି ପାଇଁ ସରକାରଙ୍କ ଦ୍ୱାରା ଅଲଗା ଅଲଗା ଫି ଧାର୍ଯ୍ୟ କରାଯାଇଛି, ସେହି ଅନୁସାରେ ଆପଣଙ୍କୁ ଫି ଦାଖଲ କରିବାକୁ ହେବ । ଯଦି ଆପଣ ବ୍ୟକ୍ତିଗତ ଭାବେ ଆବେଦନ ଫି ଦାଖଲ କରୁଥାନ୍ତି ତେବେ ଦେୟର ପରିମାଣ, ତାରିଖ ଓ ଲୋକ ସୂଚନା ଅଧିକାରୀଙ୍କ ଦସ୍ତଖତ ଥାଇ ଲୋକ ସୂଚନା ଅଧିକାରୀ/ ସହକାରୀ ଲୋକ ସୂଚନା ଅଧିକାରୀଙ୍କଠାରୁ ସଂଗେସଂଗେ ଏହାର ରସିଦ୍ ଆଣନ୍ତୁ । ଅନେକ ସରକାରୀ ବିଭାଗର ଲୋକ ସୂଚନା ଅଧିକାରୀ ନିଜେ ଫି ଗ୍ରହଣ ନକରି ତାଙ୍କ ଅଧୀନସ୍ଥ ଆର୍ଥିକ ପରିଚାଳନା ଉପ-ବିଭାଗ ବା କର୍ମଚାରୀଙ୍କ ନିକଟକୁ ପଠାଇ ଦିଅନ୍ତି । ଏ କ୍ଷେତ୍ରରେ ଆପଣ ଯେଉଁଠି ଫି ଦାଖଲ କରନ୍ତୁ ନା କାହିଁକି ଏହାର ରସିଦ୍ ନିଶ୍ଚୟ ଆଣନ୍ତୁ । ଯଦି ଡାକଯୋଗେ ପଠାଉଥାନ୍ତି ତାହା ହେଲେ ଡିମାଣ୍ଡଡ୍ରାଫ୍ଟ, ବ୍ୟାଙ୍କ୍ ଚେକ୍, କିମ୍ବା ମନିଅର୍ଡ଼ର ପଠାନ୍ତୁ । ଯଦି ନଗଦ ଅର୍ଥ ପଠାଉଥାନ୍ତି, ଏଥିପାଇଁ ଆପଣଙ୍କୁ ଫି ରସିଦ୍‌ର କପି ପଠାଇବାକୁ ପଡ଼ିବ । ଯଦି ଟ୍ରେଜେରୀ ଚାଲାଣ କରୁଥାନ୍ତି ତେବେ ଏଥିରେ ସରକାରଙ୍କ ହେଡ୍ ଅଫ୍ ଆକାଉଣ୍ଟ ନମ୍ବର ୯୯୧୬୭୧୦ ଉଲ୍ଲେଖ କରନ୍ତୁ ।

ସୂଚନା ଆବେଦନ ପାଇଁ କେଉଁ ପ୍ରକାରେ ଫି ଦାଖଲ କରାଯିବ, ତାହା ଆଇନ୍‌ରେ ନିର୍ଦ୍ଦିଷ୍ଟ ଭାବେ କୁହାଯାଇନାହିଁ । (କିମ୍ବା ସୂଚନା ପାଇବା ନିମନ୍ତେ ଅତିରିକ୍ତ ଦେୟ) କିନ୍ତୁ କେତେକ ରାଜ୍ୟରେ ବ୍ୟାଙ୍କ୍ ଚେକ୍, ଡିମାଣ୍ଡଡ୍ରାଫ୍ଟ କିମ୍ବା ନଗଦ ଅର୍ଥ ଆକାରରେ ଦାଖଲ ପାଇଁ ବିକଳ୍ପ ବ୍ୟବସ୍ଥା କରାଯାଇଛି । ଏଥିମଧ୍ୟରୁ ଯେକୌଣସି ବିକଳ୍ପକୁ ଆପଣ ନିଜର ସୁବିଧା ମୁତାବକ ପସନ୍ଦ କରିପାରିବେ । ଯଦି ଫି ଦାଖଲ ସଂପର୍କରେ ଆପଣଙ୍କ ମନରେ କିଛି ଦ୍ୱନ୍ଦ୍ୱ ବା ସନ୍ଦେହ ଥାଏ, ତାହାହେଲେ ସରକାରଙ୍କ ନିୟମାବଳୀକୁ ଯାଞ୍ଚ କରନ୍ତୁ କିମ୍ବା କୌଣସି ସରକାରୀ ବିଭାଗର ଲୋକ ସୂଚନା ଅଧିକାରୀ କିମ୍ବା ଏଇ ଆଇନ୍‌କୁ କାର୍ଯ୍ୟକାରୀ କରାଇବା ଦାୟିତ୍ୱରେ ଥିବା କୌଣସି ସଂସ୍ଥା ସହ ଯୋଗାଯୋଗ କରି ବୁଝନ୍ତୁ । ହୁଏତ, ସେମାନେ ଆପଣଙ୍କୁ ଏ ଦିଗରେ ସାହାଯ୍ୟ କରିପାରନ୍ତି ।

**ମନେ ରଖନ୍ତୁ :** ଆପଣ ଯଦି ବି.ପି.ଏଲ୍. ପରିବାରର ମୁଖ୍ୟ ହୋଇଥା'ନ୍ତି, ତେବେ ସୂଚନା ଆବେଦନ ପାଇଁ ଫି ଦାଖଲ କରିବାକୁ ପଡ଼ିବନି । ଆପଣ ଏହା ପ୍ରମାଣିତ କରିବାକୁ ଆବେଦନପତ୍ରରେ ବି.ପି.ଏଲ୍. କାର୍ଡ଼ର ଜେରକ୍ସ କପି କିମ୍ବା ଆପଣଙ୍କ ନାମ ତାଲିକାଭୁକ୍ତ ଥିବା ବି.ପି.ଏଲ୍. ତାଲିକାର ଏକ ନକଲ ବା ଏ ସଂପର୍କିତ ଅନ୍ୟକୌଣସି ପ୍ରମାଣପତ୍ର ଥାଏ, ତାହାର କପି ସଂଲଗ୍ନ କରନ୍ତୁ । ଏହା ଆପଣଙ୍କ ସୂଚନା ପାଇବାର ଅଧିକାରକୁ ସାବ୍ୟସ୍ତ କରିବ ଏବଂ ଲୋକ ସୂଚନା ଅଧିକାରୀ ଆପଣଙ୍କ ଆବେଦନଟିକୁ ବିନାମୂଲ୍ୟରେ ଗ୍ରହଣ କରିବେ ।

**ପଞ୍ଚମ ପାହାଚ : ବିଚାରକୁ ଅପେକ୍ଷା କରନ୍ତୁ**

ଆପଣ ଫି ସମେତ ଆବେଦନଟି ପାଇଲା ମାତ୍ରେ ଲୋକ ସୂଚନା ଅଧିକାରୀ ଏଭଳି ପଦକ୍ଷେପ ନେବେ, ଯେପରି ଆବେଦନ ତାରିଖଠାରୁ ୩୦ ଦିନ ମଧ୍ୟରେ ଆପଣ ସୂଚନା ପାଇପାରିବେ । ଆପଣ ମାଗିଥିବା ସୂଚନା ଯଦି ଅନ୍ୟ କୌଣସି ବିଭାଗ ସମ୍ବନ୍ଧୀୟ ହୋଇଥାଏ ଏବଂ ଏହାକୁ ଲୋକ ସୂଚନା ଅଧିକାରୀ ସେହି ବିଭାଗକୁ ପଠାଉଥାନ୍ତି, ତେବେ ଅଧିକ ୫ ଦିନ ସମୟ ଲାଗିବ । ତେବେ ସେ ଯାହା ହେଉନା କାହିଁକି, ଯଦି କୌଣସି ସ୍ଥଳେ ଜୀବନ ବା ସ୍ୱାଧୀନତା ପ୍ରତି ବିପଦ ଥାଏ, ସେସ୍ଥଳେ ଜନସୂଚନା ଅଧିକାରୀ ୪୮ ଘଣ୍ଟା ମଧ୍ୟରେ ଆପଣଙ୍କୁ ସୂଚନା ଦେବା ପାଇଁ ବାଧ୍ୟ ଅଟନ୍ତି ।

**ଉଦାହରଣ :** ଯଦି କୌଣସି ଜଣେ ବ୍ୟକ୍ତିଙ୍କୁ ଗିରଫ ପରୱାନା ବା ନିର୍ଦ୍ଦେଶ ନଥାଇ ପୋଲିସ୍ ବଳପୂର୍ବକ ନେଇଥାଏ, ତେବେ ସେହି ବ୍ୟକ୍ତିର ପରିବାର, ବନ୍ଧୁ କିମ୍ବା ସମ୍ପର୍କୀୟ (ତୃତୀୟ ପକ୍ଷ) ପୋଲିସ୍ ବିଭାଗର ଲୋକ ସୂଚନା ଅଧିକାରୀଙ୍କୁ ଏ ବିଷୟରେ ସୂଚନା ମାଗି ପାରିବେ । ଦୁଇ ଦିନ ମଧ୍ୟରେ ଲୋକ ସୂଚନା ଅଧିକାରୀ ସୂଚନା ଦେବେ । ଯଦି ଏଥିପାଇଁ ଆବେଦନ କରିବାକୁ ପଡ଼େ, ତେବେ ଏହି ଘଟଣା ସେହି ବ୍ୟକ୍ତିଙ୍କର ସ୍ୱାଧୀନତା ବା ଜୀବନ ପ୍ରତି କାହିଁକି ଓ କିପରି ବିପନ୍ନ, ତାହା ସ୍ପଷ୍ଟଭାବେ ଲେଖିବେ । ଫଳରେ ସଂପୃକ୍ତ ଲୋକ ସୂଚନା ଅଧିକାରୀ ଆବେଦନକୁ ବିଚାର ପାଇଁ ପଠାଇବାରେ ଆଉ ଡେରି କରିବେ ନାହିଁ ।

ସୂଚନା ଅଧିକାର ଏକ ଯୁଗାନ୍ତକାରୀ ଆଇନ୍ । ଦେଶରେ ଏହାଠାରୁ ଶକ୍ତିଶାଳୀ ଓ ଲୋକାଭିମୁଖୀ ଆଇନ୍ ଆଉ ନାହିଁ । ଏଇ

ଆଇନ୍‌ର ବିଧି ଓ ବ୍ୟବସ୍ଥାରେ ସରକାର ଓ ନାଗରିକ ଉଭୟଙ୍କ ପାଇଁ ସୂଚନା ଦିଆନିଆର ଯଥେଷ୍ଟ ସୁବିଧା ଓ ସୁଯୋଗ ସୃଷ୍ଟି କରାଯାଇଛି । ଏହି ଅଧିକାର ଉପରେ ଉଭୟ ପକ୍ଷ ଗୁରୁତ୍ୱ ଦେବା ସହ ଏହାକୁ ବ୍ୟବହାରରେ ଲଗାଇବା ଦରକାର । ବର୍ତ୍ତମାନ ଶାସନ କ୍ଷମତାରେ ଥିବା କର୍ତ୍ତୃପକ୍ଷଗଣ ମନେ ରଖିବା ଉଚିତ୍ ଯେ, ସେମାନେ ଯେଉଁ ପଦବୀରେ ଥାଆନ୍ତୁନା କାହିଁକି, ତା' ବାହାରେ ତାଙ୍କର ପରିଚୟ କେବଳ 'ନାଗରିକ' । ସେମାନେ ଏହି ଅଧିକାରର ଜଣେ ଜଣେ ହିତାଧିକାରୀ । ଏହାକୁ ଦୃଷ୍ଟିରେ ରଖି ସେମାନେ ଏଇ ଆଇନ୍‌କୁ କାର୍ଯ୍ୟକାରୀ କରାଇବା ଦିଗରେ ଯତ୍ନଶୀଳ ହେବା ଦରକାର । ସାଧାରଣ ନାଗରିକଙ୍କ ପାଖରେ ପ୍ରଶାସନିକ ସୂଚନା ଯେତେ ସ୍ୱଚ୍ଛ ହେବ, ସେହି ପ୍ରଶାସନ ସେତେ ସ୍ୱଚ୍ଛ ଓ ଉତ୍ତରଦାୟୀ ହେବ ଏବଂ କର୍ତ୍ତୃପକ୍ଷ ଏକ ପ୍ରଗତିଶୀଳ ପ୍ରଶାସନ ଗଢ଼ି ତୋଳିବାରେ ନିଜକୁ ଜଣେ ଜଣେ ନିଷ୍ଠାପର ଗଣତାନ୍ତ୍ରିକ ପ୍ରଶାସକ ଭାବେ ସାବ୍ୟସ୍ତ କରିପାରିବେ । ସେହିପରି ସାଧାରଣ ନାଗରିକଗଣ ଜାଣିବା ଦରକାର ଯେ, ଏଇ ଅଧିକାର ତାଙ୍କରି ପାଇଁ ସେମାନେ ଯଦି ଏହାକୁ ଠିକଣା ବାଟରେ ଠିକଣା ସମୟ ଓ ସ୍ଥାନରେ ପ୍ରୟୋଗ ନକରନ୍ତି, ତେବେ ଗଣତନ୍ତ୍ରର ବିକାଶ ପଥ ଆପଣାଛାଏଁ ରୁଦ୍ଧ ହୋଇଯିବ । ସେମାନେ ପୂର୍ବରୁ ଯେଉଁ ଦୁର୍ଦ୍ଦଶା ଦେଇ ଗତି କରିଆସୁଛନ୍ତି, ତା'ରି ମଧ୍ୟରେ ହିଁ ରହିଯିବେ । ଏଇ ଆଇନ୍‌ର ପ୍ରକ୍ରିୟା ଆରମ୍ଭ ମାତ୍ର । ଆଗକୁ ଅଛି ଅନେକ ବାଟ । ସଭିଙ୍କ ପାଇଁ ଏବେ କେବଳ ଆଗକୁ ବଢ଼ିବାର ବେଳ ।

ଓଡ଼ିଶା ସୂଚନା ଅଧିକାର ମଞ୍ଚ
ଭୁବନେଶ୍ୱର

# ଓଡ଼ିଶାର ବିଶ୍ୱବିଦ୍ୟାଳୟଗୁଡ଼ିକର ସମସ୍ୟାକୁ ୟୁ.ଜି.ସି. ସହୃଦୟତାର ସହ ବିଚାର କରିବାକୁ ରାଜ୍ୟପାଳଙ୍କ ଅନୁରୋଧ

ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁରଙ୍କ ସ୍ୱତନ୍ତ୍ର ଅନୁରୋଧକ୍ରମେ ୟୁ.ଜି.ସି. ଅଧକ୍ଷ ପ୍ରଫେସର ସୁଖଦେଓ ଥୋରାଟ ଓଡ଼ିଶା ଆସି ରାଜଭବନରେ ଏକ ଉଚ୍ଚସ୍ତରୀୟ ବୈଠକରେ ଯୋଗଦେଇ ଓଡ଼ିଶାର ବିଶ୍ୱବିଦ୍ୟାଳୟଗୁଡ଼ିକର ସମସ୍ୟା ସଂପର୍କରେ ଆଲୋଚନା କରିଛନ୍ତି । ଏହି ଅବସରରେ ଓଡ଼ିଶାର ସମସ୍ୟାକୁ ସହୃଦୟତାର ସହିତ ବିଚାର କରିବାକୁ ଶ୍ରୀ ଠାକୁର ତାଙ୍କୁ ନିବେଦନ କରିଛନ୍ତି । ରାଜ୍ୟପାଳ କହିଲେ ଯେ, ଏବେ ବିଭିନ୍ନ କ୍ଷେତ୍ରରେ ରାଜ୍ୟରେ ଚାରି ଲକ୍ଷ କୋଟିରୁ ଊର୍ଦ୍ଧ୍ୱ ଟଙ୍କାର ପୁଂଜିନିବେଶ ହେବାକୁ ଯାଉଛି । ଏପରିସ୍ଥଳେ ବିଶ୍ୱବିଦ୍ୟାଳୟଗୁଡ଼ିକ ଉଚ୍ଚମାନର ଶିକ୍ଷା ପ୍ରଦାନ କରିବା ଆବଶ୍ୟକ, ତେବେ ତାହା ହେବାକୁ ହେଲେ ବିଭିନ୍ନ ଭିତ୍ତିଭୂମିର ବିକାଶ ଓ ଅନ୍ୟାନ୍ୟ ସମସ୍ୟାର ସମାଧାନ ପାଇଁ ୟୁ.ଜି.ସି.ର ସହାୟତା ଦରକାର ।

ୟୁ.ଜି.ସି. ଅଧକ୍ଷ ପ୍ରତିଟି ବିଶ୍ୱବିଦ୍ୟାଳୟର କୁଳପତିମାନଙ୍କ ସହ ପର୍ଯ୍ୟାୟକ୍ରମେ ଆଲୋଚନାକରି ସେମାନଙ୍କ ଅଭାବ ଅସୁବିଧା, ସମସ୍ୟା ଇତ୍ୟାଦି ସଂପର୍କରେ କହିଥିଲେ । ଦଶମ ଯୋଜନାରେ ପାଇଥିବା ଅର୍ଥ ତୁରନ୍ତ ବ୍ୟୟ କରିବାକୁ ସେ ପରାମର୍ଶ ଦେଇଛନ୍ତି । ସେହିପରି ଏକାଦଶ ଯୋଜନାରେ ଅର୍ଥ ପାଇବାକୁ ହେଲେ ଆଗୁଆ ଭାବେ ଭଲ ପ୍ରସ୍ତାବ ପଠାଇବାକୁ ସେ କହିଥିଲେ । ବି.ପି.ୟୁ.ଟି. ଏବଂ ସଂସ୍କୃତି ବିଶ୍ୱବିଦ୍ୟାଳୟ ଦ୍ୱାରା ୧୨(ବି) ଅଧୀନରେ ଆସୁନଥିବାରୁ ପାଣ୍ଠି ପାଉନାହାନ୍ତି ବୋଲି ସୂଚନା ଦେଇ ଶ୍ରୀ ଥୋରାଟ୍ ଏହି ଦୁଇ ବିଶ୍ୱବିଦ୍ୟାଳୟର କୁଳପତିଙ୍କୁ ଏ ଦିଗରେ କାର୍ଯ୍ୟ ତ୍ୱରାନ୍ୱିତ କରିବାକୁ କହିଥିଲେ ।

ଅର୍ଥ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡାଇ କହିଲେ ଓଡ଼ିଶାର ୪୮ ଶତାଂଶ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହନ୍ତି । ତଥାପି ସରକାର ଉଚ୍ଚଶିକ୍ଷାକୁ ଏମାନଙ୍କ ନିକଟରେ ଉପଲବ୍ଧି କରାଇବାକୁ ସଂକଳ୍ପବଦ୍ଧ ଏବଂ ଅଭାବ ସତ୍ତ୍ୱେ ମଧ୍ୟ ଅର୍ଥ ଯୋଗାଇ ଦିଆଯାଇଛି ବୋଲି ସେ କହିଥିଲେ । ଏହି ବୈଠକରେ କୃଷି ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ନାୟକ, ଉଚ୍ଚଶିକ୍ଷା ମନ୍ତ୍ରୀ ଶ୍ରୀ ସମୀର ଦେ, ଉଚ୍ଚଶିକ୍ଷା ସଚିବ ଶ୍ରୀ ଅଶୋକ କୁମାର ତ୍ରିପାଠୀ, ରାଜ୍ୟପାଳଙ୍କ ସଚିବ ଶ୍ରୀ ନୀଳାଞ୍ଜନ ସାନ୍ୟାଲ, ସମସ୍ତ କୁଳପତି, ସଂସ୍କୃତି ସଚିବ ଗୋପୀନାଥ ମହାନ୍ତି ଏବଂ ଅନ୍ୟାନ୍ୟ ବରିଷ୍ଠ ଅଧିକାରୀ ଉପସ୍ଥିତ ଥିଲେ ।

# ସୂଚନା ଅଧିକାର ଓ ସାଧାରଣ ଜନଜୀବନ

ଓମ୍ ପ୍ରକାଶ ମହାପାତ୍ର

**ସୂ**ଚନା ଆହରଣ ଓ ବିତରଣ ସମସ୍ତ ଜୀବଜଗତ ପାଇଁ ଅମୂଲ୍ୟ ଓ ଅପରିହାର୍ଯ୍ୟ । ନିଜ ଚାରିପାଖର ଘଟଣା ପ୍ରବାହ ହିଁ ସୂଚନାର ଏକ୍ତୁଡ଼ିଶାଳ । ବଞ୍ଚିବା, ବଞ୍ଚିବା ପାଇଁ ସୁରକ୍ଷା ବ୍ୟବସ୍ଥା ଓ ଉନ୍ନତିର ଚାବିକାଠି (Survival, Protection and Development) ଏହି ଅଧିକାର ସହିତ ଓତଃପ୍ରୋତ ଭାବେ ଜଡ଼ିତ । ଶତ୍ରୁର ଆଗମନ ସମ୍ବନ୍ଧରେ, ଝଡ଼, ବତାସ, ବାତ୍ୟା ସମ୍ବନ୍ଧରେ ବା ଭୟାନକ ଏଡ୍ସ ସଚେତନତା ସଂକ୍ରାନ୍ତରେ ସୂଚନା ପ୍ରାପ୍ତି ଓ ପରିବ୍ୟାପ୍ତି ଅତ୍ୟନ୍ତ ଜରୁରି । ଏହି ଧ୍ରୁବସତ୍ୟ ବହୁ ପୁରାତନ - ବହୁ ପରୀକ୍ଷିତ । ଚକ୍ରବ୍ୟୂହ ପ୍ରବେଶ ସଂକ୍ରାନ୍ତରେ ମା' ପେଟରେ ଥାଇ ଅଭିମନ୍ୟୁର ସବିଶେଷ ସୂଚନା ପ୍ରାପ୍ତି । ଚକ୍ରବ୍ୟୂହ ଭେଦରେ ସଫଳ କିନ୍ତୁ ଚକ୍ରବ୍ୟୂହରୁ ପ୍ରସ୍ଥାନ ନିମନ୍ତେ ଆବଶ୍ୟକୀୟ ସୂଚନା ନପାଇ ପ୍ରାଣତ୍ୟାଗ । ସୂଚନାର ଗୁରୁତ୍ୱ ସଂପର୍କରେ ପୌରାଣିକ ଯୁଗର ଏହା ଏକ ବଳିଷ୍ଠ ନିଦର୍ଶନ । ଆଜିର ଆଧୁନିକ ଯୁଗ ପାଇଁ ସବିଶେଷ ସୂଚନା ପ୍ରାପ୍ତି ଏକ ଆହ୍ୱାନ । ଏହି ସଂକ୍ରାନ୍ତରେ ପ୍ରଣୀତ ସୂଚନା ଅଧିକାର ଆଇନ, ୨୦୦୫ ସମୟୋପଯୋଗୀ ତଥା ସମାଜ ଓ ବ୍ୟକ୍ତି ପାଇଁ ଅତ୍ୟନ୍ତ ଗୁରୁତ୍ୱ ବହନ କରେ । ପଡ଼ୋଶୀ ଦେଶର ପରମାଣୁ ଶକ୍ତି ସମ୍ବନ୍ଧରେ ହେଉ ବା ଗରିବ ଖଟିଖିଆର ଦିନ ମଜୁରୀ ସମ୍ବନ୍ଧରେ ହେଉ 'ସୂଚନା' ପ୍ରାପ୍ତି ଦେଶ ଓ ବ୍ୟକ୍ତି ପାଇଁ ନିତାନ୍ତ ଅପରିହାର୍ଯ୍ୟ ।

ଏହି ସୂଚନା ଅଧିକାରକୁ ଭାରତବର୍ଷର ସାମ୍ବିଧାନିକ ସ୍ୱୀକୃତି ଥାଇ ମଧ୍ୟ ଅନେକ ବ୍ୟକ୍ତିବିଶେଷ ଏଥିରୁ ବଞ୍ଚିତ ହେଉଥିଲେ । ଦାରିଦ୍ର୍ୟର କଷାଘାତ ଯୋଗୁଁ ଏହି ଅଧିକାର ସାବ୍ୟସ୍ତ ପାଇଁ ସେମାନଙ୍କ ପକ୍ଷରେ ସମ୍ଭବପର ହେଉନଥିଲା । ସମ୍ବଳର ଅଭାବରୁ ନ୍ୟାୟାଳୟର ଦ୍ୱାରସ୍ଥ ହେବା ଓ ସେ ଅଧିକାର ସାବ୍ୟସ୍ତ କରିବା 'ଆକାଶ କଇଁଆ - ଚିଲିକା ମାଛ' ସଦୃଶ ଥିଲା । ଏତଦ୍‌ବ୍ୟତୀତ କୋର୍ଟ କଚେରୀର ଆଦବ କାଇଦା, ପାରମ୍ପରିକ କଟକଣା ନ୍ୟାୟ ପାଇବାରେ ଅତ୍ୟଧିକ ବିଳମ୍ବିତ କରିଥାଏ । ଅହଲ୍ୟା ପରି ସହି ସହି, ଯନ୍ତ୍ରଣାରେ ଛଟପଟ ହୋଇ ସମାଧି ବା ଯୁଗକୁ ଯିବା ଛଡ଼ା ଅନ୍ୟପନ୍ଥା କିଛି ନଥିଲା । ଜୀବନର ଦୌଡ଼ରେ, ଅଗ୍ରଭାଗ ହେଉ ବା ପଶ୍ଚାତଭାଗରେ ସ୍ଥାନ ପାଇଥିଲେ ମଧ୍ୟ କେଉଁ କାରଣରୁ ବିଫଳତା ବା ସଫଳତା ହାସଲ ହୁଏ, ସେ ସଂକ୍ରାନ୍ତରେ ସବିଶେଷ ସୂଚନା, ବ୍ୟକ୍ତି ଓ ଜାତିର ଭବିଷ୍ୟତ ଉନ୍ନତିର ଚାବିକାଠି କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରିୟାପ୍ରୀତିର ବଶବର୍ତ୍ତୀ ହୋଇ କେତେକ ଦୁର୍ନୀତିଗ୍ରସ୍ତ ହେଲେ । ଗଣତନ୍ତ୍ରରେ ସରକାରୀ କାର୍ଯ୍ୟକ୍ରମ ବ୍ୟକ୍ତିବିଶେଷର ହିତ ପାଇଁ । ଛାତ୍ର/ଛାତ୍ରୀଟିର ପରୀକ୍ଷା ଖାତାଠାରୁ ଆରମ୍ଭ କରି ପେଟପାଟଣାର ଚାକିରି ସମ୍ବନ୍ଧୀୟ ସୂଚନା, ନିରାଶ ନକରି ଆଗେଇ ନିଏ ଉନ୍ନତିର ଚଲାପଥରେ । ଏହି ସାମ୍ବିଧାନିକ ଅଧିକାରର କଣ୍ଠରୋଧ ସୃଷ୍ଟି କରିଥିଲା ଭାରତବର୍ଷର ନାଗରିକମାନଙ୍କ ଅନ୍ତରରେ ପୁଞ୍ଜିଭୂତ କୋହ । ସୂଚନା ଅଧିକାର ଆଇନ, ୨୦୦୫ ଓ ଏହି ସଂକ୍ରାନ୍ତୀୟ ନିୟମାବଳୀର ଆଧାରରେ ସ୍ୱଳ୍ପ ଖର୍ଚ୍ଚରେ ସୂଚନା ଆହରଣ ପାଇଁ ସୁଯୋଗ ସୃଷ୍ଟି କରିଛି । ଏଥିରେ ବାଧାସୃଷ୍ଟି କରୁଥିବା ରାଜଶକ୍ତି ଅଧିକାରୀ ଓ ସଂଗଠନ ପାଇଁ ବାଧ୍ୟବାଧକତା ଓ ଦଣ୍ଡ ବ୍ୟବସ୍ଥା, ଅବସ୍ଥାର ଉନ୍ନତି ଆଣିବ ଏଥିରେ ସନ୍ଦେହର ଅବକାଶ ନାହିଁ ।

ଦେଶର ଅଗମ୍ୟ ବଣ ଜଙ୍ଗଲର ଆଦିବାସୀ ଗାଁରେ ବସବାସ କରୁଥିବା ଅଧିବାସୀ କିପରି ନିଜର ଜୀବନ ଓ ଜୀବିକା କ୍ଷେତ୍ରରେ ଏହି ଆଇନର ସଦୁପଯୋଗ କରିପାରିବେ, ସେ ସଂକ୍ରାନ୍ତରେ ସଚେତନତା ଓ ପ୍ରଚେଷ୍ଟା ଜାରି ରହିଲେ ଗଣତାନ୍ତ୍ରିକ ବ୍ୟବସ୍ଥା ସୁଦୃଢ଼ ହୋଇପାରିବ । ବ୍ୟକ୍ତିଗତ ଓ ସାମାଜିକ ସମସ୍ୟାର ଆଶୁ ସମାଧାନ ହେବ । ଦେଶରେ ହିଂସା, ଅରାଜକତା ଓ ବିଭାଜନକାରୀ ଶକ୍ତି ପରାହତ ହୋଇପାରିବ ।

ଯେପରି ଏକ ସମ୍ବାଦପତ୍ରରେ ପ୍ରକାଶିତ ସ୍ପର୍ଶକାତର ସମ୍ବାଦକୁ ନେଇ ସମାଜ ଓ ବ୍ୟବସ୍ଥାପକ ସଭାରେ ଝଡ଼ ସୃଷ୍ଟି ହେଉଛି, ସୂଚନା ଆଇନ୍ ମାଧ୍ୟମରେ ଉଦ୍‌ଘାଟିତ ଅନ୍ୟାୟକୁ ମଧ୍ୟ ସେହି ମାନ୍ୟତା ମିଳିବା ଉଚିତ । ଏ ସଂକ୍ରାନ୍ତରେ ଅବସ୍ଥାପିତ ସର୍ବୋଚ୍ଚ କର୍ମକର୍ତ୍ତାଙ୍କ ସ୍ୱେଚ୍ଛାଚାରିତା ଓ କ୍ଷମତାର ଅପବ୍ୟବହାରରେ ଅଙ୍କୁଶ ଲଗେଇବା ପାଇଁ ନ୍ୟାୟାଳୟରେ ଅପିଲ୍ ବ୍ୟବସ୍ଥା ଏହି ଆଇନ୍‌ରେ ଲିପିବଦ୍ଧ ଅଛି । ସୂଚନା ଆୟୋଗର କାର୍ଯ୍ୟରେ ରହିତାଦେଶ ଅଙ୍କୁଶ ଲଗେଇ ଏହି ଆଇନ୍‌କୁ ପଙ୍ଗୁ କରିଦେବା ମଧ୍ୟ ଗ୍ରହଣଯୋଗ୍ୟ ନୁହେଁ । ଆୟୋଗର ନିଷ୍ପତ୍ତି ବିରୁଦ୍ଧରେ ଦରଜ ମାମଲା ନ୍ୟାୟାଳୟର ଯେପରି ସ୍ୱଳ୍ପ ଖର୍ଚ୍ଚ ଓ ସ୍ୱଳ୍ପ ସମୟ ବ୍ୟବଧାନରେ

ଫଇସଲା ହୁଏ, ସେ ବାବଦରେ ଧ୍ୟାନ ଦେବା ନିତାନ୍ତ ଆବଶ୍ୟକ । ତାହା ନହେଲେ ସଦ୍ୟଜାତ ଆଇନ୍‌ଟି 'ପୋଥି ବାଇଗଣ' ହୋଇ ରହିଯିବ । କାଳକ୍ରମେ ନିଷ୍ପ୍ରଭ ହେବ ଓ ଜନସାଧାରଣଙ୍କ ଆସ୍ଥା ହରାଇବ । ଏହି ଦେଶର ଅବସ୍ଥା 'ପୁନଃ ଭବନ୍ତୁ ମୂଷିକ' ପ୍ରାୟ ହେବ । ଏଥିପ୍ରତି ଧ୍ୟାନ, ସତର୍କତା ଓ ଆଇନ୍‌ରେ ଆବଶ୍ୟକ ସଂଶୋଧନ ପ୍ରଣିଧାନ, ପ୍ରଚେଷ୍ଟା ବିଧେୟ । ଆଇନବିତ୍, ବିଚାରକ ମଣ୍ଡଳୀ, ବୁଦ୍ଧିଜୀବୀ ଏହି ବାବଦରେ ସବିଶେଷ ତର୍ଜମା କରିବେ ବୋଲି ଆଶା । ଅନେକ ଚିରାଚରିତ ପ୍ରଥାରେ ଉଚ୍ଚନ୍ୟାୟାଳୟର ଦ୍ୱାରସ୍ଥ ହେଲେଣି । କୈଫିୟତ୍ ତଲବ୍ ନୋଟିସ୍, ରହିତାଦେଶ ମିଳିଲାଣି । ଏହାର ଫଇସଲା କେବେ ହେବ ତାହା ଜଣାନାହିଁ । ସୂଚନା ଆୟୋଗ ଓ ଅଧିକାର ବିଷୟରେ ଗାଁଗହଳ, ମଣ୍ଡଳ କାର୍ଯ୍ୟାଳୟ, ପଞ୍ଚାୟତ ସ୍ତରରେ ଆଲୋଚନା ହେଲାଣି । ରାଜଶକ୍ତି, କ୍ଷମତା ବାରଣ୍ଡାର ଦଲାଲ ଓ ଦୁର୍ନୀତିଗ୍ରସ୍ତ, ଭ୍ରଷ୍ଟାଚାରୀ ଅଧିକାରୀ ଓ ବ୍ୟକ୍ତିବିଶେଷ ଆତଙ୍କିତ ହେଲେଣି । ଏହା ଗଣତନ୍ତ୍ର ନିମନ୍ତେ ଶୁଭସୂଚନା । ରାଜନୈତିକ ଗୋଷ୍ଠୀକନ୍ଦଳ ମାଧ୍ୟମରେ ଏହି ଆଇନ୍‌ଟି ବେଶ୍ ସୁଦୃଢ଼ ହେବାରେ ଲାଗିଛି । ରାଜନୈତିକ ଫାଇଦା ନ୍ୟାୟୋଚିତ ହେଲେ, କନ୍ଦଳ ଧୀରେ ଧୀରେ ଥମିଯିବ । ଗାଁ ଗହଳର କଳିତକରାଳ, ବଚସା, ହିଂସା ଅନେକ ପରିମାଣରେ ହ୍ରାସ ପାଇବ । ବିଚରା ଗୋଷ୍ଠୀ ଉନ୍ନୟନ ଅଧିକାରୀ ଏହି ଆଇନ୍‌ର ଦ୍ୱାହୀ ଦେଇ ରାଜନୈତିକ ଚାପ ଏଡେଇବାରେ ସକ୍ଷମ ହୋଇପାରିବ । ରାତିଅଧିଆ ଉନ୍ନୟନମୂଳକ ଯୋଜନା, ମିଥ୍ୟା ବିଲ୍ ତିଆରି ଓ ପଇଠ, ରିଲିଫ୍ ଚାଉଳ ହଡ଼ପ, ଇନ୍ଦିରା ଆବାସ ଯୋଜନା ଦୁର୍ନୀତି ଇତ୍ୟାଦିର ମୂଳୋତ୍ପାଟନ ଘଟିବ, ଏହି ଆଇନ୍‌ର ପ୍ରୟୋଗରେ । ଗ୍ରାମାଞ୍ଚଳ ହସିଲେ ଭାରତବର୍ଷ ହିଁ ହସିବ । ଉପଯୁକ୍ତ ହିତାଧିକାରୀଙ୍କ ମଧ୍ୟରେ ଯୋଜନାର ସୁଫଳ ସଠିକ୍ ଭାବେ ପହଞ୍ଚିବ । ବିଭିନ୍ନ ସରକାରୀ କାର୍ଯ୍ୟାଳୟରେ କାର୍ଯ୍ୟରତ କର୍ମଠ, ସାଧୁ କର୍ମଚାରୀର ଚାକିରି ସର୍ତ୍ତାବଳୀ ଅନୁଯାୟୀ ସଠିକ୍ ହିତ ସାଧିତ ହେବ । ପଦୋନ୍ନତି ଆଦି କ୍ଷେତ୍ରରେ ସ୍ୱଚ୍ଛତାର ଅଭାବ ପରିଲକ୍ଷିତ ସମସ୍ୟା ନେଇ ଅନେକ ମାମଲା ନ୍ୟାୟାଳୟରେ ପଡ଼ି ରହିଛି । ସୂଚନା ଅଧିକାର ମାଧ୍ୟମରେ ସମସ୍ତ ସୂଚନା ପ୍ରାପ୍ତି ହେଲେ ଏହି ସମସ୍ୟାର ଅନ୍ତ ହେବ । ଚାକିରି କ୍ଷେତ୍ରରେ ପଦୋନ୍ନତି ଗୁପ୍ତ ଚରିତ୍ର ପଞ୍ଜିକା ମାଧ୍ୟମରେ ହିଁ ବିଚାରଯୋଗ୍ୟ ହୋଇଥାଏ । ଭଲମନ୍ଦ ମନ୍ତବ୍ୟ ସଂପର୍କରେ ପ୍ରାଞ୍ଜଳ ସୂଚନା ଚାକିରିଆଟିଏ ପାଇବା ଉଚିତ୍ । ସମାଜର ହିତ ପାଇଁ ତଥା ନ୍ୟାୟ ପ୍ରତିଷ୍ଠା ନିମନ୍ତେ ଉକ୍ତ ବ୍ୟବସ୍ଥା ପ୍ରଚଳିତ ଆଇନର ପରିସରଭୁକ୍ତ କି ନୁହେଁ ସେ ସଂକ୍ରାନ୍ତରେ ନିଷ୍ପତ୍ତି କୁହେଳିକାପୂର୍ଣ୍ଣ ନହୋଇ ସ୍ୱଷ୍ଟ ହେବା ଉଚିତ୍ ।

ଏହି ଆଇନ୍ ମାଧ୍ୟମରେ ଦୀର୍ଘ ୨୦ ବର୍ଷ ତଳର ସୂଚନା ସଂକ୍ରାନ୍ତରେ ସବିଶେଷ ବିବରଣୀ ପାଇବାର ବ୍ୟବସ୍ଥା ରହିଛି । ଏହା ଅତୀତର ଅନ୍ୟାୟ ସଂକ୍ରାନ୍ତରେ ଲୁଚି ରହିଥିବା ତଥ୍ୟଗୁଡ଼ିକୁ ଲୋକଲୋଚନକୁ ଆଣିବାରେ ସହାୟକ ହେବ । ଉକ୍ତ କୁକର୍ମରେ ସଂପୃକ୍ତ ପଦାଧିକାରୀଙ୍କ ମୁଖା ଖୋଲିଯିବ । ସରକାର ଚାହିଁଲେ, ସେମାନେ ସମାଜର ପ୍ରତିଷ୍ଠିତ ସମ୍ମାନୀୟ ସ୍ଥାନରୁ ପଦଚ୍ୟୁତ ହୋଇ ନିନ୍ଦିତ ଓ ଦଣ୍ଡିତ ହୋଇପାରନ୍ତି । ଇତିହାସର ପୁନରାବୃତ୍ତି ଘଟିବ ନାହିଁ ।

ସୂଚନା ଅଧିକାର ଆଇନ୍‌ର ଅଷ୍ଟମ ଧାରାରେ କେଉଁ କେଉଁ ବିଷୟ ସଂକ୍ରାନ୍ତରେ ସୂଚନା ପ୍ରାପ୍ତି ସମ୍ଭବ ନୁହେଁ, ତାହା ଉଲ୍ଲିଖିତ ହୋଇଅଛି । ଏହାର ପରିସୀମା ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ ସାଧାରଣ ନାଗରିକର ସମସ୍ୟା, ନିରାଶା ଓ ଯନ୍ତ୍ରଣା ପରିପ୍ରେକ୍ଷୀରେ ନିର୍ଦ୍ଧାରିତ ହେବା ଉଚିତ । ତା' ନହେଲେ ଏହାର ଦ୍ୱାହୀ ଦେଇ ସୂଚନା ପ୍ରାପ୍ତିରେ ବାଧାସୃଷ୍ଟି ହେବ । ଏହି ଦାୟିତ୍ୱ ସର୍ବୋଚ୍ଚ ନ୍ୟାୟାଳୟ, ସୂଚନା ଆୟୋଗ ଓ ରାଜଶକ୍ତିର ଉଚ୍ଚପଦାଧିକାରୀମାନଙ୍କ ପାଇଁ ଏକ ଆହ୍ୱାନ । କଳୁଷିତ ସମାଜର ଉନ୍ନତି ପାଇଁ ତଥା ବ୍ୟକ୍ତିବିଶେଷର ନିରାଶା ଓ ଯନ୍ତ୍ରଣାର ଅବସାନ ପାଇଁ ଆଶା ଓ ଭରସା । ଆଶା, ଆଗାମୀ ଦିନରେ ଏହି ଆଇନ କାର୍ଯ୍ୟକାରିତା ସମୟରେ ସେମାନେ ବିଶେଷ ଧ୍ୟାନ ଦେବେ । ବିଷ୍ଣୁଭକ୍ତ ନାରଦ ଭଳି ସେମାନେ ଅଯାଚିତ ଭାବରେ ସମଗ୍ର ବିଶ୍ୱର ତଥା ଜନସାଧାରଣଙ୍କ ମଙ୍ଗଳ ନିମନ୍ତେ ସୂଚନା ପ୍ରଦାନ କରିବେ । ଆଗାମୀ ପିଢ଼ି ସଂଶୋଧିତ ମାର୍ଗରେ ପରିଚାଳିତ ହେବ । ବର୍ତ୍ତମାନ ଓ ଭବିଷ୍ୟତର ସୁଧାର ଘଟିବ ।

ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର

■ ■ ■ ■ ■

# ଓଡ଼ିଶାରେ ସୂଚନା ଅଧିକାର ଆଇନ - ୨୦୦୫ର ସଫଳତା ପାଇଁ ଅଧିନିୟମ

କାଶୀନାଥ ବାରିକ

ଭାରତର ପାର୍ଲାମେଣ୍ଟରେ ସୂଚନା ଅଧିକାର ଆଇନ ୨୦୦୫ ମସିହାରେ ଅନୁମୋଦିତ ହେବା ପରେ ରାଷ୍ଟ୍ରପତିଙ୍କର ସ୍ୱୀକୃତି ଲାଭ କରିଥିଲା । ଏହାଫଳରେ ୨୦୦୨ ମସିହାର କେନ୍ଦ୍ର ସରକାରଙ୍କର ତଥ୍ୟ ଜାଣିବାର ଅଧିକାର ନିୟମଟି ଅଧିକ ବଳବତ୍ତର ହୋଇପାରିଲା । ଜନରାଜ୍ୟ ଦିବସର ୫୬ ବର୍ଷ ପରେ ଏଭଳି ଏକ ପଦକ୍ଷେପକୁ ମାନ୍ୟତା ଦେବା ପାଇଁ ଭାରତର ସବୁରାଜ୍ୟ ସକ୍ରିୟ ହୋଇ ଉଠିଥିଲେ । କେନ୍ଦ୍ର ନିର୍ବାଚନ କମିଶନ ନିର୍ବାଚନ କମିଶନର ପାହ୍ୟାର ଏକ କମିଶନ ନିଯୁକ୍ତି ପାଇଁ ପଦକ୍ଷେପ ନେଇଥିଲେ । ସେଥିପାଇଁ ଏକ କମିଟି ହୋଇ ସେଥିରେ ଭାରତର ପ୍ରଧାନମନ୍ତ୍ରୀ, ବିରୋଧୀ ଦଳର ନେତା ଏବଂ କ୍ୟାବିନେଟ ପାହ୍ୟାର ଜଣେ ମନ୍ତ୍ରୀ ରହିଲେ । ଓଡ଼ିଶାରେ ସେହିପରି ରାଜ୍ୟପାଳଙ୍କ ଦ୍ୱାରା ମୁଖ୍ୟ ସୂଚନା କମିଶନର ସହ ଜଣେ ସୂଚନା କମିଶନର ନିଯୁକ୍ତ ହୋଇଥିଲେ । ଶ୍ରୀ ଧୀରେନ୍ଦ୍ର ନାଥ ପାଢ଼ୀ, ଅବସର ପ୍ରାପ୍ତ ବରିଷ୍ଠ ଆଇ.ଏ.ଏସ୍.ଙ୍କୁ ରାଜ୍ୟ ମୁଖ୍ୟ ସୂଚନା କମିଶନର ଓ ଅଧ୍ୟାପକ ଶ୍ରୀ ରାଧାମୋହନଙ୍କୁ ସୂଚନା କମିଶନର ଭାବେ ନିଯୁକ୍ତ କରାଯାଇଥିଲା । ମନୋନୟନ ପାଇଁ ରାଜ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ, ବିରୋଧୀ ଦଳର ନେତା ଓ ଜଣେ କ୍ୟାବିନେଟ୍ ପାହ୍ୟାର ମନ୍ତ୍ରୀ ରହିଥିଲେ । ଏବେ ଉକ୍ତ କମିଶନଟି ରାଜ୍ୟ ଅତିଥି ଭବନରେ କାର୍ଯ୍ୟକାରୀ ହେଉଅଛି । ଏହି କମିଶନରେ ନିଯୁକ୍ତି ପାଇବା ନିମନ୍ତେ ପ୍ରଶାସନଗତ ଦକ୍ଷତା, ସମାଜ ମଙ୍ଗଳ କାମ ପାଇଁ ତତ୍ପରତା, ଆଇନ, ବିଜ୍ଞାନ, ପ୍ରଯୁକ୍ତି ବିଦ୍ୟାରେ ପଟୁତା, ପରିଚାଳନାଗତ ଦକ୍ଷତା, ଗଣମାଧ୍ୟମ ଉପରେ ଜ୍ଞାନ, ଜନତାର ଜୀବନଯାତ୍ରା ସହ ଜଡ଼ିତ ଥିବାର ଅଭିଜ୍ଞତା ହିଁ ମୁଖ୍ୟ ଆଧାର । ସେମାନଙ୍କର କାର୍ଯ୍ୟକାଳ ୫ ବର୍ଷ ଅଥବା ୬୫ ବୟସ ପର୍ଯ୍ୟନ୍ତ ସୀମିତ ରହିବ ।

ଏହି କମିଶନ ଦାରିଦ୍ର୍ୟର ସୀମାରେଖା ତଳେ ଥିବା ବ୍ୟକ୍ତିମାନଙ୍କଠାରୁ ତଥ୍ୟ ନେବାବେଳେ ଅପିଲ ପାଇଁ ଅର୍ଥ ବା ମୂଲ୍ୟ ନିଏ ନାହିଁ । ଦାରିଦ୍ର୍ୟ ସୀମାରେଖା ତଳେ ରହିଥିବା ଲୋକମାନଙ୍କୁ ଏ ସଂପର୍କରେ ପ୍ରମାଣପତ୍ରର ନକଲ ମାତ୍ର ଦାଖଲ କରିବାକୁ ହେବ । ଓଡ଼ିଶାରେ ଥିବା ତିରିଶି ଗୋଟି ଜିଲ୍ଲା ପାଇଁ ଲୋକ ସୂଚନା ଅଧିକାରୀ ଓ ସହକାରୀ ଲୋକ ସୂଚନା ଅଧିକାରୀ ନିଯୁକ୍ତ ହୋଇଅଛନ୍ତି । ସେମାନଙ୍କୁ ସ୍ୱତନ୍ତ୍ର ଭାବରେ ରାଜ୍ୟ ସରକାରଙ୍କର ଜିଲ୍ଲାମାନଙ୍କରେ ଥିବା ଜିଲ୍ଲାପାଳମାନେ ନିଯୁକ୍ତି କରିଛନ୍ତି । ସେମାନେ ସରକାରଙ୍କ ଦ୍ୱାରା ସ୍ଥାପିତ, ଗଠିତ, ଗୃହିତ, ନିୟନ୍ତ୍ରିତ, ଅନୁଦାନ ପ୍ରଦତ୍ତ ଅନୁଷ୍ଠାନର ତଥ୍ୟ ଦେବା ସହିତ ପରୋକ୍ଷ ଭାବରେ ନିୟନ୍ତ୍ରଣାଧିନ ଥିବା ଅନୁଷ୍ଠାନର ନଥିପତ୍ର ପ୍ରମାଣପତ୍ର, ଇ-ମେଲ, ତଥ୍ୟ, ମତାମତ, ପରାମର୍ଶ, ସମ୍ବାଦ, ସର୍କୁଲାର, ନିର୍ଦ୍ଦେଶନାମା, ଲଗ୍‌ବୁକ୍, ରିପୋର୍ଟ, ମଡ଼େଲ୍ସ, ରେକର୍ଡ଼ର ତଥ୍ୟାବଳୀଗୁଡ଼ିକୁ ଇଲେକ୍‌ଟ୍ରୋନିକ୍ସ ଅଥବା ଅନ୍ୟାନ୍ୟ କୌଣସି ମାଧ୍ୟମରେ ସାହାଯ୍ୟ ନେଇ ତଥ୍ୟ ଯୋଗାଉଛନ୍ତି । ନିର୍ଦ୍ଦିଷ୍ଟ ସମୟରେ ଆବେଦନକାରୀ ଆବଶ୍ୟକ ତଥ୍ୟଗୁଡ଼ିକ ପାଇପାରୁଛନ୍ତି । ଯଦି କୌଣସି ତଥ୍ୟ ପ୍ରଦାନକାରୀ ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ତଥ୍ୟ ପ୍ରଦାନ ନ'କରନ୍ତି, ତେବେ ଆଇନ୍‌ରେ ଦଣ୍ଡବିଧାନର ବ୍ୟବସ୍ଥା ରହିଛି ।

ଯେଉଁମାନେ ତଥ୍ୟ ନେବା ପାଇଁ ଆଗ୍ରହୀ ସେମାନେ ସିଧାସଳଖ ସରକାରଙ୍କର ଅନୁମୋଦିତ ଧାର୍ଯ୍ୟ ଫର୍ମରେ ଆବେଦନ କରିବା ସହିତ ରସିଦ ମଧ ପାଇ ପାରୁଛନ୍ତି । ସେମାନେ ସିଧାସଳଖ ଟଙ୍କା ଦେଇ ପାରୁଅଛନ୍ତି ଅଥବା ଟ୍ରେଜେରୀ ଚାଲାଣ ମାଧ୍ୟମରେ ତଥ୍ୟର ମୂଲ୍ୟ ଦେଇପାରୁଛନ୍ତି । ତଥାପି ସେହି ନିୟମକୁ ଅଧିକ ସହଜ ଓ ତଥ୍ୟ ଗ୍ରହିତାର ସୁବିଧା ପାଇଁ କେତେକ ପରିବର୍ତ୍ତନ କରାଯାଇଅଛି । ସେଥିପାଇଁ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁରଙ୍କର ଅନୁମୋଦନ ନେଇ ସୂଚନା ଓ ଲୋକ ସଂପର୍କ ବିଭାଗର କମିଶନର ଶ୍ରୀ ଦିଗମ୍ବର ମହାନ୍ତି ୨୦୦୬ ମସିହାରେ ପଦକ୍ଷେପ ନେଇଥିଲେ ଓ ତାହା ଓଡ଼ିଶା ଗେଜେଟରେ ପ୍ରକାଶିତ ହୋଇଛି । ଯେଉଁଦିନ ତାହାକୁ ଓଡ଼ିଶା ଗେଜେଟ୍‌ରେ ଛପାଗଲା, ସେହିଦିନଠାରୁ ଉକ୍ତ ପରିବର୍ତ୍ତିତ ନିୟମକୁ ଲାଗୁ କରାଗଲା । ଏହି ସଂଶୋଧିତ ନିୟମାବଳୀଗୁଡ଼ିକୁ ପୁରାତନ ମୌଳିକ ନିୟମ ସହିତ ଯୋଡ଼ି ଜନସାଧାରଣଙ୍କ ଅବଗତି ନିମନ୍ତେ ପ୍ରକାଶ କରାଗଲା ।

ବର୍ତ୍ତମାନ ବିଭିନ୍ନ ଜିଲ୍ଲାରେ ଥିବା ତଥ୍ୟ ବା ଲୋକ ସୂଚନା ଅଧିକାରୀ ଓ ସହକାରୀମାନେ ଆଗ୍ରହୀ ବ୍ୟକ୍ତିମାନଙ୍କର ତଥ୍ୟାବଳୀକୁ

ଏକ ସ୍ୱତନ୍ତ୍ର ରେଜିଷ୍ଟାରରେ ଲିପିବଦ୍ଧ କରି ତାହାକୁ ମୁଖ୍ୟ କାର୍ଯ୍ୟାଳୟକୁ ଜଣାଉଅଛନ୍ତି । ଏହାଫଳରେ ଭୁବନେଶ୍ୱରସ୍ଥିତ ମୁଖ୍ୟ ସୂଚନା କମିଶନ ଯଥାରିତି ପରାମର୍ଶ ଦେଉଅଛନ୍ତି । ସୂଚନା ଅଧିକାରୀମାନେ ଆବେଦକମାନଙ୍କଠାରୁ କେତେ ମୂଲ୍ୟ ନେଉଅଛନ୍ତି, ସେସବୁକୁ ଅଧିକ ସ୍ୱଚ୍ଛ କରିବା ପାଇଁ ଫର୍ମ 'ଜି'କୁ ବ୍ୟବହାର କରାଗଲା । ସେହିସବୁ ଟଙ୍କାକୁ କେଉଁ ବ୍ୟାଙ୍କ ଓ କାହା ନାମରେ ରଖାଯିବ ତାହା ବିଭାଗୀୟ ମୁଖ୍ୟଙ୍କ କର୍ତ୍ତୃତ୍ୱାଧୀନ ରହିଲା । ଏବେ ଆବେଦନକାରୀ 'ଏ' ଫର୍ମ ବ୍ୟବହାର କରି ପୋଷ୍ଟ, ବ୍ୟକ୍ତିଗତ ଅଥବା ଇ-ମେଲ୍ ମାଧ୍ୟମରେ ସୂଚନା ଗ୍ରହଣ ପାଇଁ ନ୍ୟାଯ୍ୟ ଡାକଖର୍ଚ୍ଚ ଦେଉଥିବାର ଜଣାଯାଇଛି । ଏଥି ସକାଶେ ସୂଚନା ଗ୍ରହଣ ପାଇଁ ଆବେଦନକାରୀ ପ୍ରଥମ ଅପିଲ ପାଇଁ କୋଡ଼ିଏ ଟଙ୍କା, ଦ୍ୱିତୀୟ ଅପିଲ ପାଇଁ ପଚିଶି ଟଙ୍କା କୋର୍ଟ ଫି ଖର୍ଚ୍ଚକୁ ବହନ କରିବେ । ସେହିପରି ଏ-୪, ଏ-୩ ଆୟତନର କାଗଜକୁ ଲେଖା ଆକାରରେ ଅଥବା ଅନ୍ୟ କୌଣସି ଉପାୟରେ ଯୋଗାଇବା ବାବଦକୁ ନକଲ ସକାଶେ ଖଣ୍ଡପ୍ରତି ଦୁଇଟଙ୍କା ଦେବାକୁ ହେବ । ପ୍ରଥମ ଏକ ଘଣ୍ଟାର ଇନ୍‌ସପେକ୍ସନ ରେକର୍ଡ଼ ପାଇଁ ଆଦୌ ଟଙ୍କା ନିଆଯାଉନଥିଲା ବେଳେ, ପରବର୍ତ୍ତୀ ପ୍ରତି ପନ୍ଦର ମିନିଟ ପାଇଁ ପାଞ୍ଚଟଙ୍କା ଅଥବା ତାହାର କିୟଦଂଶ ନେବାକୁ ସ୍ଥିର ହେଲା । ଯଦି କୌଣସି ଆବେଦନକାରୀ ସି.ଡି. ନେବାକୁ ଚାହୁଁଥିବେ, ତାହାକୁ ପଚାଶ ଟଙ୍କା ଦେବାକୁ ପଡ଼ିବ । ଫ୍ଲପି ଡିସ୍‌କେଟ୍ ୧.୪୪ ଏମ୍.ବି. ପାଇଁ ଖଣ୍ଡପ୍ରତି ପଚାଶ ଟଙ୍କା ଦେବାକୁ ପଡ଼ିବ । ମାନଚିତ୍ର, ପ୍ଲାନ ଆଦିର କପି ନେବା ପାଇଁ ତାହାକୁ ବିଭାଗୀୟ ଅଧିକାରୀ ସାମଗ୍ରୀ ଖର୍ଚ୍ଚ ଓ ଆନୁଷଙ୍ଗିକ ଖର୍ଚ୍ଚ ଯୋଡ଼ି ଦେୟର ପରିମାଣ ସ୍ଥିର କରିବେ, ଭି.ଡି.ଓ. କ୍ୟାସେଟ୍, ମାଇକ୍ରୋଫିଲ୍ମ, ମାଇକ୍ରୋଫିସ୍‌କୁ ଆବେଦନକାରୀ ନେବାକୁ ଚାହିଁଲେ ତଥ୍ୟ ପ୍ରଦାନ ଅଧିକାରୀ ତାହାର ଉଚିତ ଖର୍ଚ୍ଚ, ପରିଶ୍ରମ ଓ ଆନୁଷଙ୍ଗିକ ଖର୍ଚ୍ଚକୁ ଯୋଡ଼ିବାକୁ ନିୟମରେ ଲିପିବଦ୍ଧ ହୋଇଛି । ସାର୍ଟିଫାଏଡ୍ କପି, ସାମ୍ପୁଲ ମଡେଲକୁ ଦେବା ପାଇଁ ପ୍ରକୃତ ଖର୍ଚ୍ଚକୁ ମିଶାଯିବ । ଛପାଫର୍ମରେ ସୂଚନା ଚାହିଁଲେ, ଆବେଦନକାରୀ ଛପା ଖର୍ଚ୍ଚକୁ ବହନ କରିବେ ବୋଲି ଉଲ୍ଲେଖ ହୋଇଛି ।

ଏଥିପାଇଁ ଦରଖାସ୍ତକାରୀ 'ଏ' ଫର୍ମକୁ ବ୍ୟବହାର କରିପାରିବେ ଓ ସରକାରୀ ଅନୁମୋଦିତ ରସିଦ୍ ଉପରେ ମୂଲ୍ୟଦେଇ ସୂଚନା ପାଇପାରିବେ ।

ଏ ସମସ୍ତ ବ୍ୟବସ୍ଥାକୁ ଠିକ୍ ରୂପେ କାର୍ଯ୍ୟକାରୀ କରାଯାଇପାରିଲେ ଓ ପରିବର୍ତ୍ତିତ ସୂଚନାମାନ ବିଭିନ୍ନ ମାଧ୍ୟମରେ ସର୍ବସାଧାରଣଙ୍କର ଦୃଷ୍ଟିକୁ ଆସିବାଭଳି ପଦକ୍ଷେପ ନିଆଯାଇପାରିଲେ, ରାଜ୍ୟ ସରକାରଙ୍କର ସୂଚନା ଅଧିକାର ଅଧିନିୟମ ଅଧିକ ଫଳପ୍ରଦ ହୋଇପାରିବ ବୋଲି ଆଶା କରାଯାଉଅଛି ।

ଗବେଷକ/ସାମ୍ବାଦିକ
୩୫୫, ଭୁବନେଶ୍ୱର

# ରବିଋତୁରେ ଚାଷୀମାନଙ୍କୁ ସରକାରୀ ଚିନାବାଦାମ ବିହନ ଯୋଗାଣ

ଗତବର୍ଷ ରବିଋତୁରେ ରାଜ୍ୟର ଚାଷୀମାନଙ୍କୁ ୫୪ କୁଇଣ୍ଟାଲ ଚିନାବାଦାମ ବିହନ ଯୋଗାଇ ଦିଆଯାଇଥିବା ସ୍ଥଳେ ଚଳିତ ବର୍ଷ ବନ୍ୟା କ୍ଷୟକ୍ଷତିକୁ ଲକ୍ଷ୍ୟ ରଖି ରବିଋତୁରେ ରାଜ୍ୟ ସରକାର ଏ.କେ.- ୧୨-୨୪, ଟି.ଏ.ଜି.-୨୪, ଟି.ଏମ୍.ଭି.-୨ ଏବଂ ଜେ.ଏଲ୍.-୨୪ କିସମର ୭୦ ହଜାର କୁଇଣ୍ଟାଲ ଚିନାବାଦାମ ବିହନ ବ୍ଲକ୍‌ମାନଙ୍କରେ ଥିବା ସରକାରୀ ବିହନ ବିକ୍ରୟ କେନ୍ଦ୍ରଗୁଡ଼ିକ ଜରିଆରେ ଚାଷୀମାନଙ୍କୁ ବିକ୍ରୟ କରିବାର ବ୍ୟବସ୍ଥା କରିଛନ୍ତି । ଏହି ପରିସ୍ଥିତିକୁ ଦୃଷ୍ଟିରେ ରଖି ଗତବର୍ଷ ଅକ୍ଟୋବର ମାସ ଶେଷ ସୁଦ୍ଧା ମାତ୍ର ୫୦୦ କୁଇଣ୍ଟାଲ ଚିନାବାଦାମ ବିହନ ଯୋଗାଇ ଦିଆଯାଇଛି । ଅବଶିଷ୍ଟ ସମସ୍ତ ଚିନାବାଦାମ ବିହନ ନଭେମ୍ବର ମାସ ପ୍ରଥମାର୍ଦ୍ଧ ସୁଦ୍ଧା ବିହନ ବିକ୍ରୟ କେନ୍ଦ୍ରମାନଙ୍କୁ ଯୋଗାଣ ନିମନ୍ତେ ସମସ୍ତ ବ୍ୟବସ୍ଥା କରାଯାଇଛି ବୋଲି ଓଡ଼ିଶା ରାଜ୍ୟ ବିହନ ନିଗମର ପରିଚାଳନା ନିର୍ଦ୍ଦେଶକ ଡଃ ଗୋବିନ୍ଦ ଚନ୍ଦ୍ର ଜେନା ଜଣାଇଛନ୍ତି । ଖରିଫ୍ ଋତୁରେ ୫୦ ଶତାଂଶରୁ ଊର୍ଦ୍ଧ୍ୱ ଫସଲ ବନ୍ୟା ଦ୍ୱାରା କ୍ଷତିଗ୍ରହ ହୋଇଥିବା ଅଞ୍ଚଳର ଚାଷୀମାନଙ୍କୁ ରିହାତି ଦରରେ ଚିନାବାଦାମ ବିହନ କୁଇଣ୍ଟାଲ ପିଛା ୧୫୦୦ ଟଙ୍କା ଏବଂ ଅନ୍ୟ ଚାଷୀମାନଙ୍କୁ କୁଇଣ୍ଟାଲ ପିଛା ୨୦୦୦ ଟଙ୍କା ମୂଲ୍ୟରେ ଯୋଗାଇ ଦିଆଯାଉଛି । ଘରୋଇ ବ୍ୟବସାୟୀମାନେ ଯୋଗାଇ ଦେଉଥିବା ଚିନାବାଦାମ ବିହନର ଗୁଣ ଓ କିସମର କୌଣସି ସଠିକତା ନଥିବାରୁ ଏହାକୁ ବ୍ୟବହାର କରି ଚାଷୀମାନେ ବହୁ କ୍ଷତିଗ୍ରସ୍ତ ହେବାର ସମ୍ଭାବନା ଥିବାରୁ ଏହି ବିହନ ଉପରେ ଭରସା ନକରି କେବଳ ସରକାରୀ ବିହନ କ୍ରୟ କରି ଚାଷ କରିବା ସହ ଅଧିକ ଅମଳ ପାଇଁ ଲାଭବାନ ହେବାକୁ ନିଗମ ପକ୍ଷରୁ ପରାମର୍ଶ ଦିଆଯାଇଛି । ଆବଶ୍ୟକ ପଡ଼ିଲେ, ଯୋଗାଣ ପାଇଁ ଲକ୍ଷ୍ୟଧାର୍ଯ୍ୟ ହୋଇଥିବା ୭୦ ହଜାର କୁଇଣ୍ଟାଲଠାରୁ ଅଧିକ ବିହନ ସଠିକ୍ ସମୟରେ ଯୋଗାଣ କରିବା ପାଇଁ ରାଜ୍ୟ ବିହନ ନିଗମ ପ୍ରସ୍ତୁତ ରହିଛି ବୋଲି ଉକ୍ତ ନିଗମ ପକ୍ଷରୁ ପ୍ରକାଶ ।

# ଓଡ଼ିଶାରେ ସୂଚନା ଅଧିକାର ଆଇନ - ଏକ ଅନୁଧ୍ୟାନ

ଡକ୍ଟର ଜ୍ୟୋତିର୍ମୟୀ ସାମନ୍ତରାୟ

**ସୂ**ଚନା ଅଧିକାର ଆଇନ ବାସ୍ତବରେ ଏକ ଐତିହାସିକ ଆଇନ । ବହୁବର୍ଷ ଧରି ଦାବି କରିବା ପରେ ଆମ ଦେଶରେ ସୂଚନା ଅଧିକାର ଆଇନ କାର୍ଯ୍ୟକାରୀ କରାଯାଇଛି । ସୂଚନା ଅଧିକାର ଆଇନ କାର୍ଯ୍ୟକାରୀ ହେବା ଦ୍ୱାରା ଶାସନ ପ୍ରକ୍ରିୟାର ପ୍ରତ୍ୟେକ ସ୍ତରରେ ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱ ନିମନ୍ତେ ସରକାର ଗୁରୁତ୍ୱ ଆରୋପ କରୁଛନ୍ତି । ପ୍ରଶାସନରେ ସାଧାରଣ ଲୋକମାନଙ୍କୁ ଯେଭଳି ସର୍ବାଧିକ ସୁବିଧା ସୁଯୋଗ ମିଳିପାରିବ, ସେଥିପାଇଁ ଏକ ଦାୟିତ୍ୱସଂପନ୍ନ ପ୍ରଶାସନ ଉପରେ ସରକାର ସର୍ବଦା ପ୍ରାଧାନ୍ୟ ଦେଉଛନ୍ତି ।

ସୂଚନା ଅଧିକାର ଆଇନ-୨୦୦୫ର ବିଷୟବସ୍ତୁରେ ଜନ କର୍ତ୍ତୃପକ୍ଷ ଅଧୀନରେ ବା ନିୟନ୍ତ୍ରଣରେ ଥିବା ତଥ୍ୟ ସୂଚନା ଜାଣିବା ପାଇଁ ଅଧିକାର ଦିଆଯାଇଛି । ଏପରି ଅଧିକାର ମଧ୍ୟରେ ନିମ୍ନୋକ୍ତ ବ୍ୟବସ୍ଥା ଅନ୍ତର୍ଭୁକ୍ତ -

- ଯେକୌଣସି କାଗଜ ନଥିକୁ ନିରୀକ୍ଷଣ କରିବାର ଅଧିକାର ।
- ନଥି ବା ଅନ୍ୟାନ୍ୟ ସରକାରୀ କାଗଜପତ୍ରର କିଛି ଅଂଶ ପ୍ରାମାଣିକ ନକଲ ସଂଗ୍ରହ କରିବା ।
- ଯେକୌଣସି କାଗଜପତ୍ରର ପ୍ରାମାଣିକ ନମୁନା ସଂଗ୍ରହ କରିବା ।
- ଯେଉଁଠାରେ ସଂପୃକ୍ତ ସୂଚନା କମ୍ପ୍ୟୁଟର ଅଥବା ଅନ୍ୟ କୌଣସି ଯନ୍ତ୍ର କୌଶଳରେ ସଂଗ୍ରହ କରାଯାଇ ରଖାଯାଇଥିବ, ସେପରି କ୍ଷେତ୍ରରେ ଡିସ୍କ, ଫ୍ଲପି, ଟେପ୍, ଭିଡିଓ, କ୍ୟାସେଟ୍ ବା ଅନ୍ୟ କୌଣସି ଇଲେକ୍‌ଟ୍ରୋନିକ୍ସ ମାଧ୍ୟମରେ ଏହି ସୂଚନାକୁ ହାସଲ କରାଯାଇପାରିବ ।
- ସୂଚନା ଅର୍ଥ ଯେକୌଣସି ପ୍ରକାରର ଜିନିଷ ଯାହାର ସଂଜ୍ଞା ମଧ୍ୟରେ ରେକର୍ଡ଼ / ଡକ୍ୟୁମେଣ୍ଟ/ମେମୋ/ଇ-ମେଲ୍/ମତାମତ/ ପରାମର୍ଶ/ପ୍ରେସ୍ ବିବୃତି/ସର୍କୁଲାର/ଅର୍ଡର/ଲଗ୍‌ବୁକ୍/ଚୁକ୍ତିନାମା/ ରିପୋର୍ଟ/ନମୁନା/ ଇଲେକ୍‌ଟ୍ରୋନିକ୍ସ ମାଧ୍ୟମରେ ଥିବା ତଥ୍ୟଗୁଡ଼ିକ ଯାହାକୁ କି ସଂପ୍ରତି ବଳବତ୍ତର ଥିବା କୌଣସି ଆଇନ ବଳରେ ସର୍ବସାଧାରଣ କର୍ତ୍ତୃପକ୍ଷଙ୍କ ଜରିଆରେ ହାସଲ କରାଯାଇପାରିବ ।

ସୂଚନା ଅଧିକାର ଆଇନର ଧାରା-୭ରେ ତଥ୍ୟ ଜାଣିବାକୁ ଆବେଦନ ଉପରେ ମୀମାଂସା କରିବାର ପଦ୍ଧତି ନିର୍ଣ୍ଣିତ ହୋଇଛି । ଆବେଦନ କରିବାର ୩୦ ଦିନ ଭିତରେ ପି.ଆଇ.ଓ. ତଥ୍ୟ ଯୋଗାଇବେ । ନତୁବା ଧାରା-୮ କିମ୍ବା ୯ ଅନୁସାରେ ଆବେଦନକୁ ଅଗ୍ରାହ୍ୟ କରିପାରିବେ । ଯେଉଁ ତଥ୍ୟଗୁଡ଼ିକୁ ସୂଚନା ଅଧିକାରରୁ ବାଦ ଦିଆଯାଇଛି, ସେଗୁଡ଼ିକ ଧାରା-୮ରେ ଉଲ୍ଲେଖ ହୋଇଛି । ଏହି ଆଇନର ଧାରା-୨୦ ହେଉଛି ଅତ୍ୟନ୍ତ ଆକର୍ଷଣୀୟ । ଏଥିରେ ସୂଚନା ଅଧିକାରୀ ଦୋଷୀ ସାବ୍ୟସ୍ତ ହେଲେ, ସୂଚନା ଆୟୁକ୍ତଙ୍କ ଦ୍ୱାରା ଅର୍ଥଦଣ୍ଡରେ ଦଣ୍ଡିତ ହେବେ ।

ଏହି ସୂଚନା ଅଧିକାର ଆଇନ ଅତି ସରଳ । ଇଂରାଜୀ, ହିନ୍ଦୀ, କିମ୍ବା ରାଜ୍ୟର ସରକାରୀ ଭାଷାରେ ଏକ ନିର୍ଦ୍ଦିଷ୍ଟ ଫର୍ମରେ କୌଣସି ବିଭାଗର ପି.ଆଇ.ଓ.ଙ୍କୁ ଜଣେ ଦରଖାସ୍ତକାରୀ ତଥ୍ୟ ପାଇବା ନିମନ୍ତେ ଅନୁରୋଧ କରିପାରିବେ । ୨୦୦୫ ମସିହା ଅକ୍ଟୋବର ୧୨ ତାରିଖରୁ ଓଡ଼ିଶାରେ ସୂଚନା ଅଧିକାର ଆଇନ କାର୍ଯ୍ୟକାରୀ କରାଯାଇଛି । ଓଡ଼ିଶା ସରକାରଙ୍କର ସଚିବାଳୟରେ ଥିବା ବିଭିନ୍ନ ବିଭାଗ ନିମନ୍ତେ ସଚିବାଳୟର ଅଭ୍ୟର୍ଥନା ପ୍ରକୋଷ୍ଠ ସମ୍ମୁଖ ଭାଗରେ ସେଣ୍ଟ୍ରାଲ ଆର୍.ଟି.ଆଇ. ସେଲ୍ କାର୍ଯ୍ୟ କରୁଛି । ସେହିପରି ବିଭିନ୍ନ କାର୍ଯ୍ୟାଳୟ ନିମନ୍ତେ ମଧ୍ୟ ଦରଖାସ୍ତ ଗ୍ରହଣ କରିବା ପାଇଁ ପି.ଆଇ.ଓ. ନିଯୁକ୍ତ ହୋଇଛନ୍ତି ।

ଆବେଦନକାରୀ ନିର୍ଦ୍ଧାରିତ ଫର୍ମ ପୂରଣ କରି ନିଜର ପରିଚୟ ପତ୍ରର ଗୋଟିଏ ଜେରକ୍ସ କପି ସହିତ ପ୍ରତି ଦରଖାସ୍ତ ପାଇଁ ୧୦ ଟଙ୍କା ଟ୍ରେଜେରୀ ଚାଲାଣ/ନଗଦ ଅର୍ଥ ଦାଖଲ କରିବେ । ୩୦ ଦିନ ମଧ୍ୟରେ ଯଦି ଆବେଦନକାରୀଙ୍କୁ ସଂପୃକ୍ତ ବିଭାଗ ପକ୍ଷରୁ କୌଣସି ସୂଚନା ନ ମିଳେ, ତେବେ ସେ ବିଭାଗର ଉପରିସ୍ଥ ଅଫିସର (1st Appellate Authority)ଙ୍କୁ ପ୍ରଥମ ଅପିଲ ପାଇଁ ନିର୍ଦ୍ଧାରିତ ଫର୍ମରେ (ଫର୍ମ-ଘ) ୨୦ ଟଙ୍କାର କୋର୍ଟ ଫି ଷ୍ଟାମ୍ପ ଲଗାଇ ଅପିଲ କରିବେ । ଯଦି ଆପିଲେଟ୍

କର୍ତ୍ତୃପକ୍ଷଙ୍କ ଉତ୍ତରରେ ଆବେଦନକାରୀ ସନ୍ତୁଷ୍ଟ ନ ହୁଅନ୍ତି, ତେବେ ସେ ସୂଚନା କମିଶନଙ୍କ ନିକଟରେ ଦ୍ୱିତୀୟ ଅପିଲ କରିବେ । ଦ୍ୱିତୀୟ ଅପିଲ ନିମନ୍ତେ ଆଉ ଏକ ନିର୍ଦ୍ଧାରିତ ଫର୍ମ (ଫର୍ମ-ଡ)ରେ ୨୫ ଟଙ୍କାର କୋର୍ଟ ଫି ଷ୍ଟାମ୍ପ ଲଗାଇ ଦାଖଲ କରିବେ । ଆବେଦନକାରୀଙ୍କ ସୂଚନା ପ୍ରଦାନ ଫିସ୍ ନିମ୍ନମତେ ଦାଖଲ କରିବାକୁ ହେବ । ନଥିପତ୍ରର ନିରୀକ୍ଷଣ କିମ୍ବା ଏହାର ଅଂଶ ବିଶେଷ ଦେଖିବାକୁ ଚାହିଁଲେ ପ୍ରଥମ ଏକ ଘଣ୍ଟା ପାଇଁ କୌଣସି ଦେୟ ଦେବାକୁ ପଡ଼ିବ ନାହିଁ କିନ୍ତୁ ତପ୍‌ରେ ପ୍ରତି ପନ୍ଦର ମିନିଟ୍ ପାଇଁ ୫ ଟଙ୍କା ଦେବାକୁ ପଡ଼ିବ । ଏ-୪ ସାଇଜ୍ କାଗଜର ଗୋଟିଏ ପୃଷ୍ଠା ପାଇଁ ଦୁଇ ଟଙ୍କା ନଗଦ ଅର୍ଥ ଆକାରରେ ଦେବାକୁ ହେବ । କଭର ସହିତ ସିଡି- ପ୍ରତ୍ୟେକ ସିଡି ପାଇଁ ନଗଦ ଅର୍ଥ ୫୦ ଟଙ୍କା, ଫ୍ଲପି ଡିସ୍କ (୧.୪୪ ଏମ୍.ବି.) ପ୍ରତ୍ୟେକ ଫ୍ଲପି ପାଇଁ ନଗଦ ଅର୍ଥ ୫୦ ଟଙ୍କା । ମାନଚିତ୍ର ଏବଂ ନକ୍ସା ନିମନ୍ତେ ଶ୍ରମ, ଯନ୍ତ୍ରପାତି ଓ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚକୁ ହିସାବ କରି ଲୋକ ସୂଚନା ଅଧିକାରୀ ଯଥାର୍ଥ ଦେୟର ପରିମାଣ ସ୍ଥିର କରିବେ । ଭିଡିଓ କ୍ୟାସେଟ୍/ ମାଇକ୍ରୋଫିଲ୍ମ ନିମନ୍ତେ ଦେୟର ପରିମାଣ ଲୋକ ସୂଚନା ଅଧିକାରୀ ସ୍ଥିର କରିବେ । କୌଣସି ଦ୍ରବ୍ୟର ପ୍ରାମାଣିକ ନମୁନା ପାଇବା ପାଇଁ ଆବଶ୍ୟକ ଦେୟ ମଧ୍ୟ ଲୋକ ସୂଚନା ଅଧିକାରୀ ସ୍ଥିର କରିବେ । ସମସ୍ତ ଅର୍ଥ ପ୍ରଦାନ କ୍ଷେତ୍ରରେ ଉଚିତ ଓ ଅଧିପ୍ରମାଣିତ ଅର୍ଥ ପ୍ରାପ୍ତି ରସିଦ ପ୍ରଦାନ କରାଯିବ । ୨୦୦୬ ମସିହା ମେ ମାସ ୨୯ ତାରିଖ ଦିନ ପ୍ରକାଶିତ ଓଡ଼ିଶା ଗେଜେଟ୍ ବିଜ୍ଞପ୍ତିରେ ଉପରଲିଖିତ ଦେୟ ସ୍ଥିର କରାଯାଇଛି ।

୨୦୦୫ ମସିହା ଅକ୍ଟୋବର ୧୨ ତାରିଖଠାରୁ ଓଡ଼ିଶାରେ ସୂଚନା ଅଧିକାର ଆଇନ କାର୍ଯ୍ୟକାରୀ ହେବା ପରଠାରୁ ଜନସାଧାରଣ ବିଭିନ୍ନ ବିଷୟରେ ତଥ୍ୟ ପାଇବା ନିମନ୍ତେ ଆବେଦନ କରିଛନ୍ତି । ସେଗୁଡ଼ିକ ମଧ୍ୟରେ ସର୍ଭିସ୍ ରୁଲ୍, ଏରିଅର୍, ସାଲାରି, ପ୍ରୋମୋସନ୍, ଲିଜ୍ ପ୍ଲଟ୍, ସରକାରୀ ଜମି, ପେନ୍‌ସନ ପାଇବାରେ ବିଳମ୍ବର କାରଣ ସରକାରୀ ବୁଝାମଣାପତ୍ର, ଫାଇଲ ପାଠ, ପୁନଃ ଥଇଥାନ ତଦନ୍ତ ରିପୋର୍ଟ, ସି.ସି.ଆର୍., ଡି.ପି.ସି, ଲକର ଟ୍ରାଜେଡିର ତଦନ୍ତ ରିପୋର୍ଟ ବେଆଇନ ନିର୍ମାଣ ବିଭିନ୍ନ ସରକାରୀ କାଗଜର ନକଲ ଇତ୍ୟାଦି ତଥ୍ୟ ପାଇବା ନିମନ୍ତେ ଜନସାଧାରଣ ଆବେଦନ କରିଛନ୍ତି । ଅକ୍ଟୋବର, ୨୦୦୬ ମସିହା ସୁଦ୍ଧା ତଥ୍ୟ ପାଇବା ନିମନ୍ତେ ସେଣ୍ଟ୍ରାଲ ସେଲ୍‌କୁ ସମୁଦାୟ ୧୯୧୨ଟି ଆବେଦନପତ୍ର ଆସିଛି । ଅତି ଆନନ୍ଦର କଥା ଯେ, ଏହି ଆଇନ ଓଡ଼ିଶାରେ ସଫଳତାର ସହିତ କାର୍ଯ୍ୟ କରୁଛି । ତଥାପି, ଏହି ଆଇନର ସଫଳ ରୂପାୟନ ପାଇଁ ଅଧିକ ଜନସଚେତନତାର ଆବଶ୍ୟକତା ରହିଛି । ସର୍ବସାଧାରଣ ଏହି ଆଇନ ପ୍ରତି ସଚେତନ ହେବା ସଂଗେସଂଗେ ଆଇନର ସୁଯୋଗ ନେବା ଦରକାର ।

ସହକାରୀ ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର



ଗାନ୍ଧୀ ଜୟନ୍ତୀ ଅବସରରେ ବାଲିଅନ୍ତା ଗାନ୍ଧୀ ସ୍ମୃତିପୀଠଠାରେ ଆୟୋଜିତ ଏକ ପଦଯାତ୍ରାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ । ୨.୧୦.୦୬

# ସୂଚନା ଅଧିକାର ସମ୍ପର୍କିତ କେତୋଟି ସଫଳ କାହାଣୀ

## ସୂଚନା ଅଧିକାର ଯୋଗୁଁ ସୁଫଳ ମିଳିଲା

ବୃନ୍ଦାବନ ପାଣିଗ୍ରାହୀ, ବୟସ ଷାଠିଏ ଟପିଲାଣି । କାନକୁ ଆଉ ଭଲ ଶୁଭୁନି କି ଆଖିକୁ ଭଲ ଦିଶୁନି । ତଥାପି ପ୍ରତିଟି ଦିନ ଅପେକ୍ଷା କରି ବସନ୍ତି କେବେ ମିଳିବ ଜି.ପି.ଏଫ୍. ଟଙ୍କା । ବରଗଡ଼ ଜିଲ୍ଲା ପଦ୍ମପୁର ଗାଁରେ ବୃନ୍ଦାବନ ବାବୁଙ୍କ ଘର । ସେଇ ଅଞ୍ଚଳର ପ୍ରାଥମିକ ସ୍କୁଲରେ ଶିକ୍ଷକତା କରୁଥିଲେ । ଅବସର ନେଲେଣି ୨୦୦୦ ମସିହା ଡିସେମ୍ବର ୩୧ ତାରିଖରୁ । ଅବସର ନେଲାପରେ ବୃନ୍ଦାବନ ବାବୁ ଭାବିଥିଲେ ଜି.ପି.ଏଫ୍. ଟଙ୍କାରେ ପୁଅ ପାଠ ପଢ଼ିବ, ଘର କରଜ ଶୁଝା ହେବ, ଏମିତି ଆଉ କ'ଣ କେତେ ।

ସୁଶିଲ୍ ବୃନ୍ଦାବନ ବାବୁଙ୍କ ପୁଅ । ସେ ଆଇନ୍ ପାଠ ପଢ଼ିସାରିଲା ପରେ ଏମ୍.ବି.ଏ. କରିବାକୁ ଭାଇଜାଗ୍ ଯିବା କଥା । ଆଡ୍‌ମିସନ ତାରିଖ ପାଖେଇ ଆସୁଛି । ବାପାଙ୍କ ଜି.ପି.ଏଫ୍. ଟଙ୍କା ଗଣ୍ଡାକ ମିଳିଗଲେ ଘର କରଜ ଶୁଝାଯିବ, ସୁଶିଲ୍‌ର ଆଡମିସନ ହେବ । ସେଥିପାଇଁ ସୁଶିଲ୍ ବରଗଡ଼ରୁ ଭୁବନେଶ୍ୱର ଏ.ଜି. ଅଫିସ୍ ଧାଇଁ ଧାଇଁ ଥକିଗଲା । ଯେତେଥର ସେ ଏଠିକୁ ଆସିଛନ୍ତି କେବଳ ଏ ଟେବୁଲ୍‌ରୁ ସେଟେବୁଲ୍ ହୋଇ ନିରାଶରେ ଘରକୁ ଫେରିଛନ୍ତି ।

ସେଦିନ ଥିଲା ୨୦୦୬ ଜୁଲାଇ ୧୫ ତାରିଖ । ଓଡ଼ିଶା ସୂଚନା ଅଧିକାର ମଞ୍ଚ ତରଫରୁ ଚାଲିଥିବା ଅଭିଯାନ ପକ୍ଷର ଶେଷ ତାରିଖ । ବାପାଙ୍କ ଜି.ପି.ଏଫ୍. କଥା ବୁଝିବା ପାଇଁ ସୁଶିଲ୍ ଭୁବନେଶ୍ୱର ଆସିବା ବାଟରେ ମଞ୍ଚ ତରଫରୁ ବଣ୍ଟାଯାଇଥିବା ଲିଫ୍‌ଲେଟ୍‌ଟିଏ ପାଇଥିଲେ । ଏହାକୁ ପଢ଼ିଲା ପରେ ସତେ ଯେପରି ସୁଶିଲ୍‌ଙ୍କ ପ୍ରାଣରେ ଆଶାର ସଞ୍ଚାର ହେଲା । ସେ ଏ.ଜି. ଅଫିସ୍ ଗଲେ । ପୂର୍ବଥର ପରି ତାଙ୍କୁ ଏ ଟେବୁଲ୍‌ରୁ ସେଟେବୁଲ୍ ହେବାକୁ ପଡ଼ିଲା । ସେ ଏତେ ମ୍ରିୟମାଣ ହୋଇପଡ଼ିଥିଲେ ଯେ, ଏ.ଜି. ଅଫିସ୍‌ରେ ଥାଇ ସୂଚନା ଅଧିକାର ମଞ୍ଚର କର୍ମୀମାନଙ୍କୁ ଟେଲିଫୋନ୍‌ରେ ଯୋଗାଯୋଗ କଲେ ଓ ତୁରନ୍ତ ସାହାଯ୍ୟ କରିବାକୁ ଆକୁଳ ନିବେଦନ କଲେ ।

ମଞ୍ଚର କର୍ମୀମାନେ ସୁଶିଲ୍‌କୁ ବୁଝାଇ ଓ ସବୁ ଘଟଣା ବୁଝି ତାଙ୍କୁ ସାଙ୍ଗରେ ନେଇ ଡେପୁଟି କଣ୍ଟ୍ରୋଲରଙ୍କ ନିକଟରେ ପହଞ୍ଚିଥିଲେ । ସେଠାରେ ଆଲୋଚନା କରିବା ସହ ସୂଚନା ଆବେଦନ ଫର୍ମ-କ ପୂରଣ କରାଇ ଡେପୁଟି କଣ୍ଟ୍ରୋଲରଙ୍କୁ ଦେଲେ । ସେ ଫର୍ମ ନେବେ କ'ଣ, ତୁରନ୍ତ ତାଙ୍କର ସହକର୍ମୀମାନଙ୍କୁ ନେଇ ଜରୁରି ବୈଠକ ଡକାଇ 'ମୋ ହାତରେ ଆଉ କିଛି ନାହିଁ, ଘଟଣା ଉପରକୁ ଚାଲିଗଲାଣି, ଏ ବାବୁଙ୍କ ମାମଲା ତୁରନ୍ତ ଫଇସଲା କର' ବୋଲି ଚେତାବନୀ ଦେଲେ । ତତ୍‌କ୍ଷଣାତ୍ ସୁଶିଲ୍‌ଙ୍କ ବାପା ବୃନ୍ଦାବନ ବାବୁଙ୍କ ବକେୟା ୧,୦୭,୬୮୭ ଟଙ୍କା ମଂଜୁର ହୋଇ ତାଙ୍କ ଆକାଉଣ୍ଟ୍‌ରେ ଜମା ହୋଇଗଲା ।

ସୂଚନା ଆଇନ ବଳରେ ଏତେ ଶୀଘ୍ର ସଫଳତା ପାଇଲା ପରେ ସୁଶିଲ୍ ଭାବୁଥିଲେ ଏଭଳି ସମସ୍ୟାରେ ଆଉ ଏଣିକି ହତାଶ ନହୋଇ ସୂଚନା ଅଧିକାରକୁ ସମସ୍ତେ ପ୍ରୟୋଗ କରିବା ଦରକାର ।

## ସୂଚନା ଆଇନ୍ ବଞ୍ଚେଇ ଦେଲା

ଚନ୍ଦ୍ରମଣି ବେହେରା । କଟକ ଜିଲ୍ଲା ନରସିଂହପୁର ଜୋଡ଼ୁମୁରେ ତାଙ୍କ ଘର । ମରଦମୋଖ ପ୍ରାଇମେରୀ ସ୍କୁଲରେ ପ୍ରଧାନ ଶିକ୍ଷକ ଭାବେ ଶିକ୍ଷକତା କରୁଥିଲେ । ଅବସର ନେଲେଣି ତା.୩୧.୦୫.୨୦୦୪ରିଖରୁ, କିନ୍ତୁ ଆଜିଯାଏଁ ତାଙ୍କର ବକେୟା ଜି.ପି.ଏଫ୍. ଟଙ୍କା ପାଇପାରିଲେ ନାହିଁ । ଘରେ ରୋଗିଣୀ ସ୍ତ୍ରୀ, ୫ଟି ଝିଅ ଓ ବେକାର ପୁଅକୁ ନେଇ ତାଙ୍କର ଅଭାବି ସଂସାର ଦିନକୁ ଦିନ ଉଚ୍ଛନ୍ନ ହେବାକୁ ବସିଲା । ସାଇପଡ଼ୋଶୀଙ୍କଠାରୁ ଧାର୍ କରଜ କରି କିଛି ଦିନ ଚଳିଗଲେ । ଅନ୍ୟପକ୍ଷରେ ଯେଉଁ ସାଇପଡ଼ୋଶୀ ଜି.ପି.ଏଫ୍. ଟଙ୍କା ଉପରେ ଭରସା କରି ସାର୍‌ଙ୍କୁ ଧାର୍ କରଜ ଦେଇଥିଲେ, ସେମାନେ ମଧ୍ୟ ସାର୍‌ଙ୍କ ଉପରୁ ଭରସା ତୁଟେଇ ଦେଲେ । କେହି କେହି ରାତି ନପାହୁଣୁ ସାର୍‌ଙ୍କ ଦୁଆରେ ଆସି ଟଙ୍କା ପାଇଁ ଗାଳି ଗୁଲଜ ଆରମ୍ଭ କରି ଦେଲେ । ଦୁଃଖ ଓ ଅପମାନରେ ଜର୍ଜରିତ ଚନ୍ଦ୍ରମଣି ସାର୍ ବିବ୍ରତ ହୋଇ ସେଦିନ ଭୁବନେଶ୍ୱର ଏ.ଜି. ଅଫିସ୍ ଧାଇଁ ଆସିଥିଲେ ।

ସେଦିନ ଥିଲା ଜୁଲାଇ ୨୨ ତାରିଖ । ଓଡ଼ିଶା ସୂଚନା ଅଧିକାର ମଞ୍ଚ ପକ୍ଷରୁ ବଣ୍ଟା ଯାଇଥିବା ଲିଫ୍‌ଲେଟ୍‌ଟିଏ କେଉଁଠୁ ପାଇ ଫୋନ୍‌ରେ ଯୋଗାଯୋଗ କଲେ । ମଞ୍ଚର ସ୍ୱେଚ୍ଛାସେବୀମାନଙ୍କ ମାଧ୍ୟମରେ ସୂଚନା

ଆବେଦନ ଫର୍ମ-କ ପୂରଣ କରି ସେହି ଦିନ ଭୁବନେଶ୍ୱର ଏ.ଜି. ଅଫିସ୍‌ର ଡେପୁଟି କଣ୍ଟ୍ରୋଲର୍‌ଙ୍କ ପାଖରେ ପହଞ୍ଚିଲେ । ଡେପୁଟି କଣ୍ଟ୍ରୋଲ୍‌ର ଆବେଦନପତ୍ର ଦେଖୁ ଦେଖୁ ତତ୍‌କ୍ଷଣାତ୍ ସାର୍‌ଙ୍କର ବକେୟା ଜି.ପି.ଏଫ୍ ୧ ଲକ୍ଷ ୩୮ ହଜାର ଟଙ୍କା ସେଇଦିନ ତାଙ୍କ ବ୍ୟାଙ୍କ ଆକାଉଣ୍ଟ୍‌ରେ ଜମା ପାଇଁ ମଂଜୁର କରିଦେଲେ ।

ସାର୍ ଏତେ ଖୁସି ଥିଲେ ଯେ, ସେ ସଂଗେସଂଗେ ସୂଚନା ଅଧିକାର ମଞ୍ଚ କାର୍ଯ୍ୟାଳୟକୁ ଆସି କହିଲେ, 'ଧନ୍ୟ ସେ ସୂଚନା ଅଧିକାର ଆଇନ୍, ଭଗବାନଙ୍କର ଅସୀମ ଦୟା । ସେ ମୋତେ ତୁମମାନଙ୍କ ସହିତ ଭେଟ କରାଇ ଦେଲେ । ସୂଚନା ଅଧିକାର ଆଇନ୍‌ର କାଗଜ ଖଣ୍ଡକ ମୋତେ ଓ ମୋ ପରିବାରକୁ ଆଜି ବଞ୍ଚେଇ ଦେଲା ।'

## ପଞ୍ଚାନନ ପ୍ରାପ୍ୟ ପାଇଲେ

କଳାହାଣ୍ଡି ଜିଲ୍ଲାର ଗୋଲାମୁଣ୍ଡା ବ୍ଲକ୍ ଅନ୍ତର୍ଗତ କେ. ଗାଓଁ । ଏଇଠି ପଞ୍ଚାନନ ସାହୁଙ୍କ ଘର । ଜଣେ ଭଲ ଚାଷୀ । ଦେଢ଼ବର୍ଷ ତଳେ ତାଙ୍କୁ ଏଥିପାଇଁ ଏକ ଡଗ୍‌ୱେଲ୍ ପ୍ରଦାନ କରିବାକୁ ଚୟନ କରାଯାଇଥିଲା । ଏ ବାବଦରେ ମଧ୍ୟ ୧୬ ହଜାର ଟଙ୍କା ମଂଜୁର ହୋଇଥିଲା । ମାତ୍ର ପଞ୍ଚାନନ ଏଇ ଅର୍ଥ ପାଇପାରିଲେ ନାହିଁ । ଏ ସମ୍ପର୍କରେ ପଞ୍ଚାନନ ବାରମ୍ବାର ବ୍ଲକ୍‌କୁ ଧାଇଁଥିଲେ ମଧ୍ୟ ନିରାଶରେ ଫେରୁଥିଲେ ।

ଏଇ ଗଲା ସପ୍ତାହରେ ଓଡ଼ିଶା ସୂଚନା ଅଧିକାର ମଞ୍ଚ ପକ୍ଷରୁ ଆସନ୍ତା ନଭେମ୍ବର ୧୦ରୁ ଆରମ୍ଭ ହେବାକୁ ଥିବା ୧୦ ଦିନିଆ ଅଭିଯାନ ଉପଲକ୍ଷେ କେତେକ ସୂଚନା ଅଧିକାର ସ୍ଲୋଗାନ କାନ୍ଥ ବାଡ଼ରେ ଲେଖା ହୋଇଛି । ମଞ୍ଚର ଜଣେ କର୍ମୀଙ୍କୁ ଟେଲିଫୋନ୍ ମାଧ୍ୟମରେ ଯୋଗାଯୋଗ କରି ପଞ୍ଚାନନ ତାଙ୍କର ସମସ୍ୟା ଜଣାଇଲେ । ଆବଶ୍ୟକୀୟ ପରାମର୍ଶ ପାଇଲା ପରେ ପଞ୍ଚାନନ ବ୍ଲକ୍ ଅଫିସ୍‌କୁ ଗଲେ । ସେଠାରେ ଜନ ସୂଚନା ଅଧିକାରୀଙ୍କୁ ସୂଚନା ଅଧିକାର ଫର୍ମ ମାଗିଲେ । ସେ କାହିଁକି ଫର୍ମ ମାଗୁଛନ୍ତି ବୋଲି ପଚାରିବାରୁ ପଞ୍ଚାନନ ତାଙ୍କ ଡଗ୍‌ୱେଲ୍ ବାବଦ ୧୬ ହଜାର ଟଙ୍କା ଆଜିଯାଏ କାହିଁକି ମିଳିନାହିଁ ତାହା ଜାଣିବାକୁ ଆବେଦନ କରିବେ ବୋଲି କହିଲେ । ଜନସୂଚନା ଅଧିକାରୀ ଫର୍ମ ଦେବେ କ'ଣ, ମାତ୍ର ଅଧଘଣ୍ଟା ଭିତରେ ସେଠାକାର କୃଷି ଅଧିକାରୀ ପ୍ରାପ୍ୟ ୧୬ ହଜାର ଟଙ୍କାର ଚେକ୍ ପଞ୍ଚାନନଙ୍କୁ ଦେଇଦେଲେ ।

ପଞ୍ଚାନନ ଅତି ଖୁସିରେ ଘରକୁ ବାହୁଡ଼ିବା ବେଳେ ଭାବୁଥିଲେ, 'ବାରେ ବାଃ ! ସୂଚନା ଅଧିକାରର କି କମାଲ୍ ନ ହେଲାରେ । ଗୁହାରୀ କରି କରି ଯାହା ନୋହିଲା, ସୂଚନା ଅଧିକାର ଯୋଗୁଁ ସମ୍ଭବ ହେଲା ।

## ଇନ୍ଦିରା ଆବାସ ଟଙ୍କା ମିଳିଲା

ଧ୍ରୁବ ମହାପାତ୍ର । ଭାରି ଗରିବ । ଖୋରଧା ଜିଲ୍ଲା ଧଳାପଥର ଗ୍ରାମପଞ୍ଚାୟତର ଠଣାପଲ୍ଲୀ ଗାଁରେ ତାଙ୍କ ଘର । ଧ୍ରୁବ ଇନ୍ଦିରା ଆବାସ ଯୋଜନାରେ ଘର ଖଣ୍ଡେ ପାଇଥିଲେ । ପ୍ରଥମ କିସ୍ତି ଟଙ୍କାରେ ଘରକାମ ଆରମ୍ଭ କରିଥିଲେ । କିନ୍ତୁ ଶେଷ କିସ୍ତି ଟଙ୍କା ପାଇପାରିନଥିଲେ । ଏଥିପାଇଁ ତାଙ୍କୁ ବହୁବାର ବ୍ଲକ୍ ଅଫିସ୍‌କୁ ଧାଁ ଧପଡ଼ କରିବାକୁ ପଡ଼ିଥିଲା । ଦଉଡ଼ି ଦଉଡ଼ି ପାଦରୁ ଚପଲ ସରିଗଲା । ହେଲେ କିଛି ଫଳ ହେଲା ନାହିଁ । ଘର କାମ ଅଧାପନ୍ତରିଆ ଯୋଗୁଁ ବଡ଼ ମନଦୁଃଖରେ ଥାନ୍ତି ଧ୍ରୁବ । ସୂଚନା ଅଧିକାର ମଞ୍ଚର ଜଣେ କର୍ମୀ କୌଣସି ସୂତ୍ରରୁ ଏ ଖବରଟି ଜାଣିବାକୁ ପାଇଲେ । ଧ୍ରୁବଙ୍କୁ ଡାକି ଘଟଣା ସମ୍ପର୍କରେ ଶୁଣିଲେ ଏବଂ ତାଙ୍କୁ ସାଙ୍ଗରେ ନେଇ ବୋଲଗଡ଼ ବି.ଡି.ଓ.ଙ୍କୁ ଭେଟିଲେ । ତାଙ୍କ ଆଗରେ ସୂଚନା ଅଧିକାର ସମ୍ପର୍କରେ ଅବଗତ କରାଇଲେ । ଏକଥା ଶୁଣି ସେ 'ଠିକ୍ ଅଛି ଆମେ ଦେଖିବୁ' ବୋଲି କହିଲେ । ମାତ୍ର ଆଠରୁ ଦଶଦିନ ବିତିଗଲେ ମଧ୍ୟ କିଛି କାମ ହେଲା ନାହିଁ । ଶେଷରେ ଧ୍ରୁବ ନିଜେ ବି.ଡି.ଓ.ଙ୍କୁ ଭେଟି ସୂଚନା ଅଧିକାର ଫର୍ମ ପୂରଣ କରିବା କଥା କହିଲେ । ସୂଚନା ଆବେଦନ କଥା ଶୁଣି ବି.ଡି.ଓ. କ'ଣ କଲେ କେଜାଣି, ଦୁଇଦିନ ମଧ୍ୟରେ ଧ୍ରୁବ ଶେଷ କିସ୍ତି ଟଙ୍କା ପାଇଗଲେ ।

ଧ୍ରୁବ ନିଜେ ନିଜକୁ ବିଶ୍ୱାସ କରିପାରୁନଥିଲେ । ସେ ଭାବୁଥିଲେ ସତରେ ! ଆମଭଳି ଗରିବଙ୍କ ପାଇଁ ଏ ସୂଚନା ଅଧିକାର କେତେ ଦରକାରୀ ।

## ସୂଚନା ଆଇନ୍ : ଗରିବର ଭରସା

ରାଣୀବାସୀ କହଁର । ଆଦିବାସୀ ବିଧବା । ବୟସ ଷାଠିଏ ଟପିଲାଣି । ଭାରି ଗରିବ । ନିଜର ପିଲାପିଲି ନାହାନ୍ତି । କନ୍ଧମାଳ ଜିଲ୍ଲାର ଫୁଲବାଣୀ ବ୍ଲକ୍ । ଜୁଡ଼ିପାଜୁ ପଞ୍ଚାୟତର କଳାମ୍ବରୁ ଗାଁରେ ରହନ୍ତି ରାଣୀବାସୀ । ସେ ଜଣେ ବି.ପି.ଏଲ୍. କାର୍ଡ଼ଧାରୀ । ତାଙ୍କ ପାଖରେ କାର୍ଡ଼ ଅଛି କିନ୍ତୁ ସେ କେବେ ବି.ପି.ଏଲ୍. ଚାଉଳ ପାଇ ନାହାନ୍ତି । ତାଙ୍କ ଭାଗ ଚାଉଳ ସବୁ ବାଟମାରଣା ହୋଇଯାଉଥିଲା । ସେଠାରେ ଓଡ଼ିଶା ସୂଚନା ଅଧିକାର ମଞ୍ଚର କନ୍ଧମାଳ ଶାଖାର ଜଣେ କର୍ମୀ ଏ ବିଷୟରେ ଜାଣି ସ୍ଥାନୀୟ ଭି.ଏଲ୍.ଡବ୍ଲ୍ୟୁଙ୍କୁ ଦେଖାକରି ରାଣୀବାସୀଙ୍କ ସମ୍ପର୍କରେ ଜାଣିବାକୁ ଚାହିଁଲେ । ମାତ୍ର ଭି.ଏଲ୍.ଡବ୍ଲ୍ୟୁ. ରାଣୀବାସୀଙ୍କର ଚାଉଳ ଆସିନଥିବା କାରଣରୁ ସେ ତାହା ପାଇପାରୁ ନାହାନ୍ତି କି ପାଇପାରିବେ ନାହିଁ ବୋଲି କହିଲେ । ଯେତେବେଳେ ସୂଚନା ଅଧିକାର ଆଇନ୍ ସମ୍ପର୍କରେ ତାଙ୍କୁ ବୁଝାଗଲା ଯେ ରାଣୀବାସୀଙ୍କ ଚାଉଳ ନଦେଲେ ସୂଚନା ପାଇଁ ଆବେଦନ କରାଯିବ । ତୁରନ୍ତ ରାଣିବାସୀଙ୍କୁ ଡାକି ତାଙ୍କୁ ଭି.ଏଲ୍.ଡବ୍ଲ୍ୟୁ. ୪୮ କେ.ଜି. ଚାଉଳ ଦେବାର ବ୍ୟବସ୍ଥା କରିଦେଲେ ।

ରାଣୀବାସୀ ଚାଉଳ ପାଇଲା ପରେ ଥରଥର କଣ୍ଠରେ ଅଜସ୍ର କଲ୍ୟାଣ ଢାଳି ଦେଉଥିଲେ । ସରକାରଙ୍କର ଏହି ଆଇନ୍ ତାଙ୍କ ଭଳି ଭୋକିଲା ପେଟକୁ ଦାନା ଯୋଗାଇ ଦେଲା । ଏ ଆଇନ୍ ନୁହେଁ, ଗରିବର ଭଗବାନ ।

## ମାଗି ନ ପାଇଲି ଯାହା, ଯାଚି ଦେଇଗଲେ ତାହା

ଏକଥା କେହି ବି ସହଜରେ ବିଶ୍ୱାସ କରିପାରୁନାହାନ୍ତି । ଏମିତି କି ନିଜେ କୋକିଳ । ମାତ୍ର ଘଟଣାଟି ନିହାତି ସତ । କୋକିଳ ବେଓ୍ୱା । ବିଧବା ସେ । ରହନ୍ତି ଭୁବନେଶ୍ୱରର କପିଳେଶ୍ୱର ଗ୍ରାମର ହାଡ଼ିସାହିରେ । ଘରେ ପାଞ୍ଚ ପାଞ୍ଚଟି ଛୁଆ । ସ୍ୱାମୀ ଶଙ୍କର ନାଏକ । ସେ ଭୁବନେଶ୍ୱର ମ୍ୟୁନିସିପାଲିଟିରେ ସଫେଇ କର୍ମଚାରୀ ଭାବେ କାମ କରୁଥିଲେ । ୧୯୯୧ ମସିହାରୁ ଆରପାରିକୁ ଚାଲି ଗଲେଣି । ଏଭଳି ଦୁଃସମୟରେ କୋକିଳ ମ୍ୟୁନିସିପାଲିଟି ଅଫିସ୍‌କୁ ଯାଇ ସ୍ୱାମୀଙ୍କ ପେନ୍‌ସନ ଗ୍ରାଚ୍ୟୁଇଟି, ଜି.ପି.ଏଫ. ଇତ୍ୟାଦି ବକେୟା ପ୍ରାପ୍ୟ ସମ୍ପର୍କରେ ପଚାରି ବୁଝିଥିଲେ । ଏଥିପାଇଁ ସେ ବିଭିନ୍ନ ଲୋକଙ୍କ ଦ୍ୱାରସ୍ଥ ହୋଇଛନ୍ତି, ଦୁଃଖ ଜଣାଇଛନ୍ତି । କିନ୍ତୁ କିଛି ଫଳ ହେଲାନି ।

ଏମିତି ଏମିତି ଦୀର୍ଘ ପନ୍ଦର ବର୍ଷ ବିତିଗଲା । ଭଗବାନ ବୋଧହୁଏ ଏତେ ବର୍ଷ ପରେ କୋକିଳ ପାଇଁ ସୁଖର ଦିନ ଆଣିଦେଲେ । ତାହା ଥିଲା ୨୦୦୫ ମସିହା ନଭେମ୍ବର ମାସ । କୋକିଳ ତାଙ୍କର ଜଣେ ପଡ଼ୋଶୀଙ୍କଠାରୁ ୨୦୦୫ରେ ପ୍ରଣୟନ ହୋଇଥିବା ନୂଆ ସୂଚନା ଅଧିକାର ଆଇନ୍ କଥା ଜାଣିବାକୁ ପାଇଲେ । କୋକିଳଙ୍କ ମନରେ ଆଶାର ସଂଚାର ହେଲା । ସେ ସାହସ କରି ମୃତ ସ୍ୱାମୀ ଶଙ୍କରଙ୍କର ବକେୟା ପେନ୍‌ସନ୍ ଟଙ୍କା ପାଇଁ ଫର୍ମ-କ ରେ ଆବେଦନ କଲେ । କିନ୍ତୁ ସେ ଏହାର ଜବାବ ପାଇଲେ ନାହିଁ । ସେ ପୁଣି ୨୦୦୬ ମସିହା ଜାନୁଆରୀ ୨୦ ତାରିଖରେ ପ୍ରଥମ ଅପିଲ୍ କଲେ ।

କୋକିଳ ୨୦୦୬ ଫେବୃଆରୀ ୨୭ରେ ରାଜ୍ୟ ସୂଚନା କମିଶନଙ୍କୁ ଦ୍ୱିତୀୟ ଅପିଲ୍ କଲେ । ଆବଶ୍ୟକୀୟ କାଗଜପତ୍ର ଯାଞ୍ଚ କଲାପରେ ରାଜ୍ୟ ସୂଚନା କମିଶନ ତୁରନ୍ତ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ସହ ମ୍ୟୁନିସିପାଲିଟି କର୍ପୋରେସନ୍‌କୁ କୋକିଳଙ୍କର ବକେୟା ପ୍ରାପ୍ୟ ୮୭ ହଜାର ୯୧୧ ଟଙ୍କା ଏକ ସପ୍ତାହ ମଧ୍ୟରେ ପ୍ରଦାନ କରିବାକୁ ନିର୍ଦ୍ଦେଶ ଦେଲେ । ସପ୍ତାହକ ମଧ୍ୟରେ କୋକିଳ ତାଙ୍କର ବକେୟା ପ୍ରାପ୍ୟ ପାଇଗଲେ ।

ଆନନ୍ଦରେ ଅଧିର ହୋଇପଡ଼ିଥିବା କୋକିଳ ନିଜକୁ ଏବେବି ବିଶ୍ୱାସ କରିପାରୁନାହାନ୍ତି । ଦୀର୍ଘ ୧୫ ବର୍ଷର ପ୍ରତୀକ୍ଷା ପରେ ସତରେ କ'ଣ ସେ ଜିତିଗଲେ ? ତାଙ୍କ ଭଳି ଜଣେ ଅସହାୟ ମହିଳା ବାବୁଭାୟାମାନଙ୍କ ପାଖରେ ହାତପାତି ଦିନେ ନ୍ୟାୟର ଭିକ୍ଷା ମାଗି ନିରାଶ ହୋଇଥିଲେ ଆଜି ସେଇ ବାବୁଭାୟାମାନେ ସୂଚନା ଆଇନ୍‌ର ଅଠାକାଠିରେ ପଡ଼ି ତାଙ୍କୁ ନ୍ୟାୟ ଯାଚିକି ଦେଇଛନ୍ତି ।

## ସୂଚନା ଦେବା ପୂର୍ବରୁ କାମ ଆରମ୍ଭ

ଖରିଆଳ ବ୍ଲକ୍‌ର ଖାସବାହାଲ ପଞ୍ଚାୟତର ଦୋହେଲପଡ଼ା । ଏହି ପଞ୍ଚାୟତର ଶରଧାପୁର ରାସ୍ତାକାମ ହୋଇଥିଲା । ନିମ୍ନମାନର କାମ ଯୋଗୁଁ ଗତ ବର୍ଷାରେ ରାସ୍ତାଟି ସଂପୂର୍ଣ୍ଣ ଧୋଇଗଲା । କାମ ହେବାର ବର୍ଷଟି ନପୁରୁଣୁ ରାସ୍ତାର ଏଭଳି ଶୋଚନୀୟ ଅବସ୍ଥା ଯୋଗୁଁ ଲୋକେ ଯା'ଆସ କରିବାରେ ଭାରି ହୀନସ୍ତା ହେଲେ । ଏମିତି ନିମ୍ନମାନର ରାସ୍ତାକାମ କାହିଁକି ହୋଇଥିଲା, ସେ ସଂପର୍କରେ ଜାଣିବାକୁ ନୂଆପଡ଼ାର ଗୋପାଳ ଚନ୍ଦ୍ର ଦାସ ସଂପୃକ୍ତ କାର୍ଯ୍ୟ ନିର୍ବାହୀ ଯନ୍ତ୍ରୀଙ୍କୁ ସୂଚନା ମାଗିଲେ । ରାସ୍ତା କାମ ପାଇଁ କେତେଟଙ୍କା ଆସିଥିଲା, ଗୋଡ଼ି, ସିମେଣ୍ଟ, ବାଲିର ପରିମାଣ, ରାସ୍ତାର ଉଚ୍ଚତା, କାର୍ଯ୍ୟାଦେଶ କିଏ ଦେଇଥିଲେ, କିଏ କାମ ଠିକା ନେଇଥିଲେ, କେତେ ଶ୍ରମିକ କାମ କରି କେତେଟଙ୍କା ମଜୁରୀ ନେଇଥିଲେ ଇତ୍ୟାଦି ।

ଗୋପାଳବାବୁ ସୂଚନା ଫର୍ମରେ ଏହି ସବୁ ପ୍ରଶ୍ନ ପଚାରି ତା'ର ନକଲ ମାଗିଥିଲେ । ମାତ୍ର ଇଂଜିନିୟର ବାବୁ ସୂଚନା ଦେବେ କ'ଣ, ଆଗେ ଭଙ୍ଗା ରାସ୍ତା ନିର୍ମାଣ କାର୍ଯ୍ୟରେ ପ୍ରାଣମୂର୍ଚ୍ଛା ଲାଗି ପଡ଼ିଛନ୍ତି ।

ଏବେ ଲୋକେ ହୁସିଆର ହେଲେଣି । ସବୁକାମ ବିଷୟରେ ଏମିତି ସୂଚନା ଅଧିକାରକୁ ପ୍ରୟୋଗ କରି ଜବାବ ମାଗିବେ ବୋଲି ମନରେ ଆଣ୍ଟ ବାନ୍ଧିଛନ୍ତି ।

## ଧନ୍ୟ ସୂଚନା ଅଧିକାର ଆଇନ

ଭୁବନେଶ୍ୱର ନିକଟବର୍ତ୍ତୀ ଆଇଗିଣିଆ । ଏଠାରେ ପୂର୍ବତଟ ରେଳବାଇ ପାଇଁ 'ମେମର୍ସ ସନ୍ତୋଷ ମୋଟର୍ସ' ନାମକ ସ୍ୱୀକୃତିପ୍ରାପ୍ତ ସର୍ଭିସ୍ ସେଣ୍ଟର ଅଛି । ଏହି ସେଣ୍ଟରର ମାଲିକ ହେଉଛନ୍ତି ଯୁବ ଇଂଜିନିୟର ପ୍ରଦୀପ କୁମାର ପତ୍ରୀ ।

ଆତ୍ମନିର୍ଭରଶୀଳତା ଉପରେ ଗଭୀର ବିଶ୍ୱାସ ରଖିଥିବା ଇଂଜିନିୟର ପ୍ରଦୀପ ଦୀର୍ଘଦିନ ହେଲା ରେଳବାଇର ବିଭିନ୍ନ ସର୍ଭିସ୍ କାମ କରିଥାନ୍ତି । ବିଶେଷ କରି ଜଣେ ବିଶ୍ୱସ୍ତ ଓ ନିଷ୍ଠାପର ଯନ୍ତ୍ରୀଭାବେ ସବୁ ରେଳବାଇ ବିଭାଗର କର୍ମକର୍ତ୍ତାମାନେ ମୌଖିକ କାର୍ଯ୍ୟାଦେଶ ଦେଇଥାନ୍ତି । କାମ ସରିଲା ପରେ ସରକାରୀ ନିୟମ ମୁତାବକ ବିଲ୍ ଭାଉଚର କାମ ହୁଏ ଏବଂ ପ୍ରଦୀପଙ୍କୁ ପ୍ରାପ୍ୟ ଦିଆଯାଇଥାଏ ।

ଏମିତି ମଧ୍ୟ ରେଳବାଇ ଅଫିସର ଟାଟାସୁମୋ ଗାଡ଼ି (ଓ.ଆର୍.-୨ ଏଚ୍-୬୪୨୩) ମରାମତି ପାଇଁ ମୌଖିକ ଆଦେଶ ମିଳିଥିଲା । ପ୍ରଦୀପ ଅନ୍ୟ କାମ ପରି ଟାଟାସୁମୋର ମରାମତି କାର୍ଯ୍ୟ ଶେଷ କରି ଅଫିସ୍ ଜିମା ଦେଲେ । ଏ ବାବଦରେ ତାଙ୍କର ୧୪ ହଜାର ଟଙ୍କାର ବିଲ୍ ଦେଇଥିଲେ । ଏହି ମରାମତି କାମ ୨୦୦୬, ଫେବୃଆରୀ ୧୬ ତାରିଖରେ ହୋଇଥିଲା । ଦୀର୍ଘ ୫ ଦିନ କାଳ ଧାଇଁଲା ପରେ ଟଙ୍କା ତ ପାଇଲେ ନାହିଁ, ମାତ୍ର ସଂପୃକ୍ତ ଅଫିସର ଗାଡ଼ିକାମ ସନ୍ତୋଷଜନକ ନୁହେଁ, ଭଲଭାବେ ମରାମତି କରିଦିଅ ବୋଲି କହିଲେ । ପ୍ରଦୀପ ପୁନର୍ବାର ଗାଡ଼ି ମରାମତି କାମ କଲେ । (ପୂର୍ବ

ମରାମତି ପରେ ହୋଇଥିବା ଯାନ୍ତ୍ରିକ ତ୍ରୁଟି) । ଏଭଳି ଘଟଣାରେ ଯୁବଇଂଜିନିୟର ପ୍ରଦୀପଙ୍କ ସ୍ୱାଭିମାନକୁ ଭାରି ବାଧିଲା ।

ଏହି ସମୟରେ ଗତ ଜୁଲାଇ ୧ରୁ ୧୫ ଯାଏଁ ଓଡ଼ିଶା ସୂଚନା ଅଧିକାର ମଞ୍ଚ ପକ୍ଷରୁ ଭୁବନେଶ୍ୱର ଅଭିଯାନ ବିଷୟରେ ହଠାତ୍ ଖବରକାଗଜରୁ ଜାଣିବାକୁ ପାଇଲେ । ତାଙ୍କ ମନରେ ଆଶାର ଆଲୋକ ଉଦ୍‌ଭାସିତ ହେଲା । ସେ ତୁରନ୍ତ ମଞ୍ଚର କର୍ମୀଙ୍କୁ ଏ ସଂପର୍କରେ ଯୋଗାଯୋଗ କରି ସହାୟତା ଶିବିରରେ ପହଞ୍ଚିଲେ । ଆଇନ୍ ଅନୁଯାୟୀ ତା.୯.୦୭.୦୬ରେ ସୂଚନା ଫର୍ମ-କରେ ଆବେଦନ କରି ତାଙ୍କ କାମରେ ମନ ଦେଲେ ।

ବାସ୍ ! ଆଉ ଡେରି ହେଲାନି । ଜୁଲାଇ ୧୨ ତାରିଖରେ ନିଜେ ରେଳବାଇର ଏ.ଜି.ବି.ଏମ୍. ଶ୍ରୀ ପତ୍ରୀଙ୍କୁ ଲେଖିଥିବା ଏକ ଚିଠି ପହଞ୍ଚିଗଲା । ଯେଉଁଥିରେକି ଶ୍ରୀପତ୍ରୀଙ୍କୁ ତାଙ୍କର ବିଲ ଦାଖଲ କରିବା ପାଇଁ ଅନୁରୋଧ କରାଯାଇଥିଲା । ଶ୍ରୀ ପତ୍ରୀ ଆଉ ଡେରି ନକରି ତାଙ୍କର ଆବଶ୍ୟକୀୟ କାଗଜପତ୍ର ସହ ବିଲ୍ ଦାଖଲ କରିଦେଲେ । ସେହି ଦିନ ତାଙ୍କର ପ୍ରାପ୍ୟବାବଦ ଚେକ୍ ପ୍ରଦାନ କରାଗଲା ।

ସୂଚନା ଅଭିଯାନ ମଞ୍ଚର ଉଦ୍‌ଯାପନୀ ଦିବସରେ ତା.୧୫.୦୭.୦୬ ସଭାରେ ଶ୍ରୀ ପତ୍ରୀଙ୍କୁ ଯୋଗ ଦେବାକୁ ମଞ୍ଚ ତରଫରୁ ନିମନ୍ତ୍ରଣ କରାଯାଇଥିଲା । ସେ କୃତଜ୍ଞତା କଣ୍ଠରେ କହୁଥିଲେ, 'ଧନ୍ୟ ସେ ସୂଚନା ଅଧିକାର ଆଇନ' ଯାହା ବଳରେ ମୁଁ ମୋ ଶ୍ରମର ମୂଲ୍ୟ ପାଇପାରିଲି ।

## ବ୍ୟାଙ୍କ ଦୁର୍ନୀତିର ମୁଖା ଖୋଲିଲା

କଳାହାଣ୍ଡି ଜିଲ୍ଲାରେ ଜଣେ ବ୍ୟାଙ୍କ୍‌ମ୍ୟାନେଜର ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକ ନିମନ୍ତେ ସରକାରଙ୍କ ପକ୍ଷରୁ ଯୋଗାଇ ଦିଆଯାଉଥିବା କ୍ଷୁଦ୍ର ବ୍ୟବସାୟିକ ଋଣ ପ୍ରଦାନ କ୍ଷେତ୍ରରେ ବ୍ୟାପକ ଦୁର୍ନୀତି କରୁଥିଲେ । ଏହି ଲୋକମାନେ ତାଙ୍କ ଜରିଆରେ ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକ ଋଣ କରାଇ ଦେଉଥିଲେ । ଏ ବାବଦରେ ମ୍ୟାନେଜର ବାବୁ ୨୦% ଟଙ୍କା କାଟି ରଖୁଥିଲେ । ୧୦% କମିଶନ ସିଧାସଳଖ ମ୍ୟାନେଜରଙ୍କର ଓ ଅବଶିଷ୍ଟ ୧୦% କମିଶନ ଦଲାଲଙ୍କ ମଧ୍ୟରେ ବଣ୍ଟା ଯାଉଥିଲା ।

ଏହି କାରଣରୁ ସ୍ୱୟଂ ସହାୟକ ଗୋଷ୍ଠୀରେ ସାମିଲ୍ ଥିବା ଗାଁର ଗରିବ ମହିଳାମାନେ କ୍ଷତିଗ୍ରସ୍ତ ହେଉଥିଲେ । ଏହିପରି କିଛିଦିନ ଚାଲିଲା । ଏ ଘଟଣା ସମ୍ପର୍କରେ ସ୍ଥାନୀୟ 'ଦି ହ୍ୟୁମାନ ଡେଭେଲପ୍‌ମେଣ୍ଟ' ନାମକ ଏକ ସ୍ୱେଚ୍ଛାସେବୀ ସଂଗଠନର କର୍ମୀ ଜାଣିବାକୁ ପାଇଲେ ।

ଏ ସଂର୍ପକରେ ଉକ୍ତ ସ୍ୱେଚ୍ଛାସେବୀ ସୂଚନା ଅଧିକାର ମଞ୍ଚର ସହାୟତା ଲୋଡ଼ିଲେ । ବ୍ୟାଙ୍କ୍ ମ୍ୟାନେଜରଙ୍କର ଏଭଳି କମିଶନ କାରବାରକୁ କିପରି ରୋକାଯାଇ ପାରିବ ସେଥିପାଇଁ ପରାମର୍ଶ ଲୋଡ଼ିଥିଲେ । ଠିକ୍ ସେତିକି ବେଳେ ସେଠାକାର ମହାଲକ୍ଷ୍ମୀ ସ୍ୱୟଂ ସହାୟକ ଗୋଷ୍ଠୀ ଏହି ବ୍ୟାଙ୍କରୁ ଋଣ ଆବେଦନ କରିଥିଲେ । ଋଣ ଅର୍ଥ ୨ ଲକ୍ଷ ୩୦ ହଜାର ମଂଜୁର ହୋଇଥିଲାବେଳେ ବ୍ୟାଙ୍କ ମ୍ୟାନେଜର ତାଙ୍କର ସ୍ୱଭାବସୁଲଭ କାଇଦାରେ ୨୦% ଅର୍ଥାତ୍ ୪୦ ହଜାର ଟଙ୍କା କାଟି ରଖିଥିଲେ । 'ଦି ହ୍ୟୁମାନ ଡେଭେଲପ୍‌ମେଣ୍ଟର କର୍ମୀମାନେ ପରାମର୍ଶ ମୁତାବକ ସୂଚନା ଫର୍ମ-କରେ ଋଣ ସଂପର୍କିତ ଗାଇଡ଼ଲାଇନ୍ ସହ ୨୦% ଟଙ୍କା କାଟି ରଖିଥିବାର ନିର୍ଦ୍ଦେଶାନାମା ସଂପର୍କରେ ସୂଚନା ମାଗିଥିଲେ ।

ସୂଚନା ଆବେଦନ ପାଇଲା ପରେ ବ୍ୟାଙ୍କ ମ୍ୟାନେଜର ତରବରିଆ ଭାବେ କେମିତି ଉପାୟରେ କେଜାଣି ଧରାଧରି କରି ଦୁଇଦିନ ମଧ୍ୟରେ ଅନ୍ୟ ଏକ ବ୍ୟାଙ୍କ୍‌କୁ ବଦଳି ହୋଇଗଲେ । ସେଠାରୁ ସୂଚନା ଅଧିକାର ମଞ୍ଚର କର୍ମୀମାନେ ବ୍ୟାଙ୍କ ମ୍ୟାନେଜରଙ୍କୁ ଭେଟିବା ପାଇଁ ଖୋଜିଲା ବେଳକୁ (୧୬.୯.୦୬) ସିଏ ଆଉ ସେଠାରେ ନାହାନ୍ତି ବୋଲି ଜାଣିବାକୁ ପାଇଲେ । ଏ ସଂପର୍କରେ ନୂଆ ମ୍ୟାନେଜରଙ୍କ ଦୃଷ୍ଟି ଆକର୍ଷଣ କରାଯାଇଛି । ଏଭଳି ଦୁର୍ନୀତି ପଦାରେ ପଡ଼ିବାରୁ ଲୋକଙ୍କ ଭିତରେ ଚାଞ୍ଚଲ୍ୟ ଖେଳି ଯାଇଛି । ସେମାନେ ଏଣିକି ସବୁ ସରକାରୀ କାମ, ବ୍ୟାଙ୍କରୁ ସୂଚନା ଅଧିକାର ଆଇନ ବଳରେ ମାଗିବେ ବୋଲି ପଣ କରିବା ସହ ଆଗାମୀ ଦିନରେ ଲୋକଙ୍କ ପାଖରେ ଏହି ବାର୍ତ୍ତା ପହଞ୍ଚାଇ ଦେବେ ବୋଲି କହୁଛନ୍ତି ।

## ଜି.ପି.ଏଫ୍. ଟଙ୍କା ମିଳିଲା

କଳାହାଣ୍ଡି ଜିଲ୍ଲା ଧର୍ମଗଡ଼ ବ୍ଲକ୍ । ଧର୍ମଗଡ଼ରେ ରହନ୍ତି ଶ୍ରୀମତୀ ଜ୍ୟୋସ୍ନାରାଣୀ ସାହୁ । ସେ ନିକଟସ୍ଥ ପର୍ଲା ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରରେ ଜଣେ ଷ୍ଟାଫ୍ ନର୍ସ ଭାବେ କାମ କରୁଥିଲେ । ୨୦୦୬ ମସିହା ଜାନୁଆରୀ ୩୧ ତାରିଖରୁ ଅବସର ନେଲେଣି । ଅବସର ନେବାର ୬ ମାସ ବିତି ଯାଇଥିଲେ ମଧ୍ୟ ତାଙ୍କର ବକେୟା ଜି.ପି.ଏଫ୍. ଓ ଅନ୍ୟାନ୍ୟ ପ୍ରାପ୍ୟ ପାଇପାରିଲେ ନାହିଁ । ବହୁ ଅନୁରୋଧ ସତ୍ତ୍ୱେ ତାଙ୍କ ଫାଇଲ୍‌ର ଫାଶ ଖୋଲିଲା ନାହିଁ । ଏହାର କାରଣ ପଚାରିବାରୁ ଶ୍ରୀମତୀ ସାହୁଙ୍କୁ ସଂପୃକ୍ତ କର୍ମଚାରୀ ୨ ହଜାର ଟଙ୍କା ଲାଞ୍ଚ ମାଗିଥିଲେ ।

ଏଇଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ ଶ୍ରୀମତୀ ସାହୁଙ୍କ ପୁଅ ମାନସ ରଂଜନ ଖବର କାଗଜର ପୃଷ୍ଠା ଲେଉଟାଉଥିଲା ବେଳେ ନଜର ପଡ଼ିଲା ଓଡ଼ିଶା ସୂଚନା ଅଧିକାର ମଞ୍ଚ ତରଫରୁ ଜୁଲାଇ ୧ରୁ ୧୫ ତାରିଖ ଯାଏଁ ଅନୁଷ୍ଠିତ ହେଉଥିବା ଅଭିଯାନ ଉପରେ । ସେ ସଂଗେ ସଂଗେ ମଞ୍ଚର ଜଣେ କର୍ମୀଙ୍କୁ ଫୋନ୍‌ରେ ଯୋଗାଯୋଗ କଲେ ଓ ମା'ଙ୍କ ଦୁର୍ଦ୍ଦଶା ସଂପର୍କରେ ଜଣାଇଲେ ।

ମାନସ ସୁଦୂର କଳାହାଣ୍ଡିର ଧର୍ମଗଡ଼ରେ ଥିବା କାରଣରୁ ତାଙ୍କୁ କେଉଁ ୱେବ୍‌ସାଇଟ୍‌ରେ କେଉଁ ଫର୍ମରେ କିପରି ଆବେଦନ କରିବାକୁ ହେବ, ତାହା ପରାମର୍ଶ ଦିଆଗଲା ।

ତଦନୁସାରେ, ସେ ସେହିଦିନ ହିଁ ଫର୍ମ-'କ'ରେ ଆବେଦନ କଲେ । ଆବେଦନର ଜବାବ ଦେବାକୁ ଆଇନ୍‌ରେ ୩୦ ଦିନ ସମୟସୀମା ଥିଲେ ମଧ୍ୟ ଜ୍ୟୋତ୍ସ୍ନାରାଣୀ ସାହୁଙ୍କ ଜି.ପି.ଏଫ୍. ଟଙ୍କା ଦୁଇ ଦିନ ମଧ୍ୟରେ ମିଳିଗଲା । ଧର୍ମଗଡ଼ ବ୍ଲକ୍‌ର ପ୍ରାରମ୍ଭିକ ସ୍ୱାସ୍ଥ୍ୟ କେନ୍ଦ୍ରର ମେଡିକାଲ୍ ଅଫିସର ଶ୍ରୀମତୀ ସାହୁଙ୍କ ବକେୟା ୪ ଲକ୍ଷ ୭୮ ହଜାର ଟଙ୍କା ମଂଜୁର କରିଦେଲେ ।

ଏବେ ମା' ଓ ପୁଅ ଉଭୟେ ଖୁସି । ସଂଗେସଂଗେ ସେ ଏହି ସଫଳତା କଥା ମଞ୍ଚକୁ ଜଣାଇଦେଲେ । ସୂଚନା ଅଧିକାର ଆଇନ୍‌ର କୁହୁକରେ ଏଭଳି ଆତ୍ମବିହ୍ୱଳ ହୋଇ ପଡ଼ିଛନ୍ତି ଯେ, ତାଙ୍କ ଜିଲ୍ଲାରେ ଏଭଳି ଦୁର୍ଦ୍ଦଶା ଭୋଗୁଥିବା ଗରିବଙ୍କଠାରୁ ଆରମ୍ଭ କରି ସମସ୍ତ ବର୍ଗର ଲୋକଙ୍କୁ ସହାୟତା କରିବେ ବୋଲି ସଂକଳ୍ପ କରିବା ସହ ସୂଚନା ଅଧିକାର ଆଇନ୍ ସଂପର୍କରେ ସଚେତନତା ସୃଷ୍ଟି କରିବାକୁ ଅଣ୍ଟା ଭିଡ଼ି ଆଗକୁ ବାହାରିଛନ୍ତି ।

## ଡି.ଆଇ. ସୂଚନା ଯୋଗାଇ ଦେଲେ

କଳାହାଣ୍ଡି ଜିଲ୍ଲାର ଧର୍ମଗଡ଼ ବ୍ଲକ୍ । ଏଠାକାର ପ୍ରାଥମିକ ଶିକ୍ଷା ବ୍ୟବସ୍ଥା ସଂପର୍କରେ ଲୋକେ ଅନୁଭବ କରୁଥିଲେ ହେଁ ପ୍ରଶାସନ ପାଖରେ ମୁହଁ ଖୋଲିବା ପାଇଁ ସାହସ କରିପାରୁନଥିଲେ ।

ସେଠାକାର ବାସିନ୍ଦା ତଥା ଜଣେ ଯୁବ ସମାଜସେବୀ ମାନସରଂଜନ ସୂଚନା ଅଧିକାର ବଳରେ ତାଙ୍କ ମା' ଜ୍ୟୋତ୍ସ୍ନାରାଣୀ ସାହୁଙ୍କ ଜି.ପି.ଏଫ୍ ଟଙ୍କା ପାଇବାରେ ସଫଳ ହୋଇଥିଲେ, ତେଣୁ ତାଙ୍କ ବ୍ଲକ୍‌ରେ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ହେଉଥିବା ଅବ୍ୟବସ୍ଥା ଓ ଦୁର୍ନୀତିକୁ କିପରି ରୋକାଯାଇ ପାରିବ ସେ ସଂପର୍କରେ ସୂଚନା ଅଧିକାର ମଞ୍ଚର ଜଣେ କର୍ମୀଙ୍କୁ ଫୋନ୍‌ରେ ଯୋଗାଯୋଗ କଲେ । ଆବଶ୍ୟକୀୟ ପରାମର୍ଶ ନେଲାପରେ ସେ ସଂପୃକ୍ତ ବ୍ଲକର ଅଧିକାରୀ ଶ୍ରୀ ମାଧବ ମହାନନ୍ଦଙ୍କୁ ପ୍ରଥମେ ସେ ଅଞ୍ଚଳର ସ୍କୁଲ ସଂଖ୍ୟା, ଛାତ୍ର/ଶିକ୍ଷକ ଉପସ୍ଥାନଠାରୁ ଆରମ୍ଭ କରି ଶିକ୍ଷା ବ୍ୟବସ୍ଥା ପର୍ଯ୍ୟନ୍ତ ୨୦ଟି ପ୍ରଶ୍ନ ସମ୍ୱଳିତ ସୂଚନା ଫର୍ମ-କରେ ଆବେଦନ କରିଥିଲେ । ଏହି ଦରଖାସ୍ତଟି ତା.୩୦.୯.୦୬ରିଖରେ ଡି.ଆଇ.ଙ୍କୁ ଦେଇଥିଲେ । ଇତିମଧ୍ୟରେ ପ୍ରାୟ ଏକ ମାସ ବିତିଗଲା । ମାତ୍ର ବିବାଦ ମେଣ୍ଟିଲା ନାହିଁ । ତେଣୁ ମାନସ ଏହାର ପରବର୍ତ୍ତୀ ପଦକ୍ଷେପ ଭାବେ ସୂଚନା ପାଇଁ ପ୍ରଥମ ଅପିଲ୍ ଫର୍ମ ପୂରଣ କରି ତାହାକୁ ପଠାଇବା ପୂର୍ବରୁ ଡି.ଆଇ. କେଉଁଠୁ ଖବର ପାଇଲେ କେଜାଣି ସିଧା ମାନସଙ୍କ ଘରକୁ ଯାଇ କହିଲେ, ଦୟାକରି ଅପିଲ୍ କରନ୍ତୁ ନାହିଁ ।

ଡି.ଆଇ. ଦିନେ ନୁହେଁ ଦୁଇ ଦିନ କାଳ ଏହିପରି ଆସି କହିବାରୁ ମାନସ ଓ ତାଙ୍କ ଗାଁ ଲୋକ ଦ୍ୱନ୍ଦ୍ୱରେ ପଡ଼ିଲେ । ସେ ପୁଣି ଯୋଗାଯୋଗ କଲେ ମଞ୍ଚ କର୍ମୀଙ୍କୁ । ତା'ପରେ ଡି.ଆଇ. ଚାହୁଁଥିବା ସୂଚନା ସବୁ ଯୋଗାଇ ଦେଇଛନ୍ତି ।

## ଆଳୁ ଖୋଳୁ ଖୋଳୁ ମହାଦେବ

ବୌଦ୍ଧ ଜିଲ୍ଲା ହରଭଂଗା ବ୍ଲକ୍‌ର ସରସରା ଗ୍ରାମ ପଞ୍ଚାୟତ । ଏହି ଗ୍ରାମ ପଞ୍ଚାୟତର କଟାସ ଗୋଠସାହି ସରସରା ଘଡ଼ି ସାହିର ପି.ଡବ୍ଲ୍ୟୁ.ଡି. ରାସ୍ତା ନିମନ୍ତେ ପ୍ରତି ରାସ୍ତା ପିଛା ୨ ଲକ୍ଷ ହିସାବରେ ମୋଟ ୮ ଲକ୍ଷ ଟଙ୍କା ମଂଜୁର ହୋଇଥିଲା । ଏହି କାମ ପାଇଁ ତା.୧୩.୨.୦୬ରିଖରେ ସଂପୃକ୍ତ ବି.ଡି.ଓ. ସଂପ୍ରସାରଣ ଅଧିକାରୀ ଜରିଆରେ ପଲ୍ଲୀସଭା ବୈଠକ ଡାକିବାକୁ ନୋଟିସ୍ କଲେ । ମାତ୍ର ତା.୨୨.୪.୦୬ରିଖ ପର୍ଯ୍ୟନ୍ତ ପଲ୍ଲୀସଭା ଡକାଗଲା ନାହିଁ କି ବୈଠକ ହେଲା ନାହିଁ । ଏଥିରେ ବିଳମ୍ୱ ଘଟିବାରୁ ଗାଁ ଲୋକ ଏକାଠି ହୋଇ ସଂପ୍ରସାରଣ ଅଧିକାରୀଙ୍କୁ ଡାକି ତା.୨୪.୪.୦୬ରିଖରେ ପଲ୍ଲୀସଭା କରି ଭି.ଏଲ୍.ଏଲ୍. ନିର୍ବାଚନ କଲେ ଏବଂ ୱାର୍କ ଅର୍ଡର ପାଇଁ ବି.ଡି.ଓ.ଙ୍କ ପାଖକୁ ଗଲେ । ମାତ୍ର ବି.ଡି.ଓ. ସେମାନଙ୍କୁ ସରପଞ୍ଚ ୱାର୍କ ଅର୍ଡ଼ର ଦେବାକୁ ମନା କରିଛନ୍ତି ବୋଲି କହିବା ସହ ଲୋକଙ୍କୁ ଫେରାଇ ଦେଲେ । ଗାଁ ଲୋକେ ପୁନର୍ବାର ତା.୨୮.୪.୦୬ରିଖରେ ବୌଦ୍ଧ ଜିଲ୍ଲାପାଳଙ୍କୁ ଭେଟିଲେ । ଜିଲ୍ଲାପାଳ ବି.ଡି.ଓ.ଙ୍କୁ କୈଫତ୍ ତଲବ କଲେ । ବି.ଡି.ଓ. କୈଫତ ଦେଲେ କି ନାହିଁ ତାହା ଜଣାପଡ଼ିଲା ନାହିଁ, ବରଂ ଜିଲ୍ଲାପାଳ, କିମ୍ୱା ବି.ଡି.ଓ. ଏ ସଂପର୍କରେ ଲୋକମାନଙ୍କୁ କିଛି ମଧ୍ୟ ଜଣାଇଲେ ନାହିଁ । ତା.୬.୫.୦୬ରିଖରେ ଲୋକମାନେ ପୁଣି ଜିଲ୍ଲାପାଳଙ୍କୁ ଅଭିଯୋଗ ପ୍ରକୋଷ୍ଠରେ ଭେଟିଲେ । କିନ୍ତୁ ଫଳ କିଛି ହେଲାନି, ଲୋକେ ନିରାଶ ହୋଇ ବସିଥିଲାବେଳେ ଓଡ଼ିଶା ସୂଚନା ଅଧିକାର ମଞ୍ଚ ପକ୍ଷରୁ ହେଉଥିବା ଅଭିଯାନ ସଂପର୍କରେ ଜାଣିବାକୁ ପାଇ ତା.୨୨.୭.୦୬ରିଖରେ ସୂଚନା ଅଧିକାର ଆବେଦନ ଫର୍ମ-'କ'ରେ ବ୍ଲକ୍ ଜନସୂଚନା ଅଧିକାରୀଙ୍କୁ କେତେକ ବିଷୟରେ ସୂଚନା ମାଗିଥିଲେ ।

ତା.୨୬.୭.୦୬ରିଖରେ ଲୋକ ସୂଚନା ଅଧିକାରୀ ଆବଶ୍ୟକୀୟ ସୂଚନା ଯୋଗାଇ ଦେଲେ । ଏଥିରୁ ଜଣାପଡ଼ିଥିଲା ଯେ, ଜାଲ୍ ପଲ୍ଲୀସଭାରେ ଜାଲ୍ ନୋଟିସ୍ ଓ ଜାଲ୍ ଦସ୍ତଖତରେ ସରପଞ୍ଚଙ୍କ ଭାଇ ... ୪ ଲକ୍ଷ ଓ ସମିତି ସଭ୍ୟାଙ୍କ ଭାଇ ପ୍ରତାପ ପ୍ରଧାନଙ୍କୁ ୪ ଲକ୍ଷ ଟଙ୍କାର କାମ ଦିଆଯାଇଛି । ପୁଣି ତାହା ଯେଉଁ ଗ୍ରାମର ରାସ୍ତା ପାଇଁ ଉଦ୍ଦିଷ୍ଟ ତାହା ସେଠାରେ ନହୋଇ ୨ନଂ ୱାର୍ଡ଼ ପାଇଁ ୱାର୍କ ଅର୍ଡର ଦିଆଯାଇଛି ।

ଏ ସଂପର୍କରେ ବୌଦ୍ଧ କୋର୍ଟରେ ଆଫିଡେଭିଟ୍ କରି ଜିଲ୍ଲାପାଳଙ୍କ ନିକଟରେ ଦାବୀ କରାଯାଇଛି । ସୂଚନା ଅଧିକାର ଯୋଗୁଁ ୮ ଲକ୍ଷ ଟଙ୍କା ଦୁର୍ନୀତି ପଦାରେ ପଡ଼ିଯାଇଛି ।

## ସୂଚନା ଆଇନ୍‌ର କୁହୁକ

ଶ୍ରୀମତୀ କ୍ଷେତ୍ରମଣି ସାମନ୍ତରାୟ । ଭୁବନେଶ୍ୱରରେ ରହନ୍ତି । ସେ ଶୁଭ ବେହେରା ନାମ୍ନୀ ଜଣେ ମହିଳାଙ୍କଠାରୁ ଧଉଳି ନିକଟରେ

ଛୋଟିଆ ଜାଗାଟିଏ କିଣିଥିଲେ । ଜମିର ସମସ୍ତ ଆବଶ୍ୟକୀୟ କାଗଜପତ୍ର ନୋଟାରୀଙ୍କ ଦ୍ୱାରା ପ୍ରସ୍ତୁତ ହୋଇ ଖୋର୍ଦ୍ଧା ଜିଲ୍ଲାର ଭୁବନେଶ୍ୱରସ୍ଥ ସବ୍‌ରେଜିଷ୍ଟ୍ରର ଅଫିସ୍‌ରେ ଦାଖଲ କରାଯାଇଥିଲା । ଅଭାବି କ୍ଷେତ୍ରମଣି ବାରମ୍ବାର ଉକ୍ତ କାର୍ଯ୍ୟାଳୟର ଦ୍ୱାରସ୍ଥ ହେଲାପରେ ମଧ୍ୟ ତାଙ୍କ ଦୁଃଖ କେହି ଶୁଣିଲେ ନାହିଁ । ଶେଷକୁ ହତାଶ ହୋଇ ପଡ଼ିଲେ ସେ ।

ସେଦିନ ଥିଲା ୨୦୦୬ ମସିହା ଜୁଲାଇ ୧୩ ତାରିଖ । ଓଡ଼ିଶା ସୂଚନା ଅଧିକାର ମଞ୍ଚ ପକ୍ଷରୁ ଦୁର୍ନୀତି ବିରୋଧରେ ସୂଚନା ଅଧିକାର ଅଭିଯାନ ଚାଲିଥାଏ । ପଥପ୍ରାନ୍ତ ନାଟକ ଦ୍ୱାରା କଚେରୀ ପରିସରରେ ସୂଚନା ଅଧିକାର ନାଟକକୁ କ୍ଷେତ୍ରମଣି ଦେଖୁଥାନ୍ତି । ହଠାତ୍ ସେଇଠି ସେ ତାଙ୍କ ଦୁଃଖ ଜଣାଇଲେ । ସୂଚନା ସହାୟତା ଶିବିରରେ ସ୍ୱେଚ୍ଛାସେବୀମାନଙ୍କ ଦ୍ୱାରା ଧାରା-୬(୧) ଅନୁସାରେ ସୂଚନା ଅଧିକାର ଆବେଦନ ଫର୍ମ ପୂରଣ କରି ମୁଖ୍ୟ କିରାଣୀଙ୍କ ପାଖରେ ପହଞ୍ଚିଲେ । ପଟ୍ଟା କାଗଜ ଦେବାକୁ ନିବେଦନ କରିଥିଲେ ।

ଏହାପରେ କ୍ଷେତ୍ରମଣି ସେହି ଅଫିସର ଜନସୂଚନା ଅଧିକାରୀଙ୍କୁ ଭେଟିଲେ । ଜନସୂଚନା ଅଧିକାରୀ ତୁରନ୍ତ ପଟ୍ଟା କାଗଜପତ୍ର ଦେବାକୁ ମୁଖ୍ୟ କିରାଣୀଙ୍କୁ ନିର୍ଦ୍ଦେଶ ଦେଲେ । ୧୫ ମିନିଟ୍ ମଧ୍ୟରେ କ୍ଷେତ୍ରମଣି ତାଙ୍କର ସମସ୍ତ ମୂଳ କାଗଜପତ୍ର ସରକାରୀ ଭାବେ ପାଇଗଲେ । ସେ ସୂଚନା ଅଧିକାର ଆଇନ୍ ବଳରେ ବିନା ଲାଞ୍ଚରେ ତାଙ୍କର ଜମିପଟ୍ଟା ପାଇଲେ । ପଟ୍ଟା ପାଇଲା ପରେ କ୍ଷେତ୍ରମଣି ଆନନ୍ଦରେ ଅଧିର ହୋଇ କହୁଥିଲେ, 'ଦେଖରେ ଦେଖ, ସୂଚନା ଆଇନ୍ କିମିଆ ଦେଖ' ।

ସୌଜନ୍ୟ - ସି.ଓ୍ୱାଇ.ଏସ୍.ଡି., ଭୁବନେଶ୍ୱର

# ଓଡ଼ିଶାରେ ବିଭିନ୍ନ କ୍ଷେତ୍ରରେ ପୁଂଜିନିବେଶ ପାଇଁ ପୁଂଜିନିବେଶକାରୀଙ୍କୁ ଶକ୍ତି ମନ୍ତ୍ରୀଙ୍କ ଆହ୍ୱାନ

ନୂଆଦିଲ୍ଲୀସ୍ଥିତ ହୋଟେଲ ମୌର୍ଯ୍ୟ ଶେରାଟନ୍‌ରେ ଆୟୋଜିତ ଟାଇକନ୍-୨୦୦୬ ସମ୍ମିଳନୀର ଉଦ୍‌ଘାଟନୀ ସମାରୋହରେ ଓଡ଼ିଶାର ଶକ୍ତି, ସଂସ୍କୃତି ଓ ସୂଚନା ପ୍ରଯୁକ୍ତିବିଦ୍ୟା ମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଉଦ୍‌ବୋଧନ ଦେଇ କହିଥିଲେ ଯେ ଓଡ଼ିଶାରେ ବିଭିନ୍ନ କ୍ଷେତ୍ରରେ ପୁଂଜି ବିନିଯୋଗ ପାଇଁ ବ୍ୟାପକ ସୁବିଧା ସୁଯୋଗ ଥିବାରୁ ପୁଂଜି ନିବେଶକାରୀମାନେ ଏଥିପ୍ରତି ଆଗ୍ରହ ପ୍ରକାଶ କରୁଛନ୍ତି । ଏହି ସମ୍ମିଳନୀରେ ଦେଶ ବିଦେଶରୁ ଯୋଗଦାନ କରିଥିବା ପ୍ରାୟ ୨୦୦୦ ପ୍ରତିନିଧିଙ୍କୁ ସମ୍ବୋଧିତ କରି ଓଡ଼ିଶାରେ ପୁଂଜି ବିନିଯୋଗ ପାଇଁ ଆଗେଇ ଆସିବାକୁ ମନ୍ତ୍ରୀ ଶ୍ରୀ ପାତ୍ର ଆହ୍ୱାନ କରିଥିଲେ ।

ପୁଂଜି ବିନିଯୋଗ କ୍ଷେତ୍ରରେ ଓଡ଼ିଶା ସମଗ୍ର ବିଶ୍ୱରେ ଏକ ପ୍ରମୁଖ ସ୍ଥାନ ଅଧିକାର କରିଅଛି ଏବଂ ରାଜଧାନୀ ଭୁବନେଶ୍ୱରକୁ ଏକ ପ୍ରକୃଷ୍ଟ ପ୍ରଜ୍ଞାଭିତ୍ତିକ ଶିକ୍ଷା ସହର ରୂପେ ପରିଗଣିତ କରିବା ପାଇଁ ସରକାର ଯଥେଷ୍ଟ ଗୁରୁତ୍ୱ ଆରୋପ କରୁଛନ୍ତି ବୋଲି ମନ୍ତ୍ରୀ ଶ୍ରୀ ପାତ୍ର କହିଥିଲେ । ସଂପ୍ରତି ପ୍ରାୟ ୪ ଲକ୍ଷ କୋଟି ଟଙ୍କା ପୁଂଜି ବିନିଯୋଗର ସୁଯୋଗ ଓଡ଼ିଶାର ପ୍ରାପ୍ତ ହୋଇଛି । 'ଭୁବନେଶ୍ୱର ୨୦୩୦' ନାମକ ଏକ ପ୍ରସ୍‌ପେକ୍‌ଟିଭ୍ ପ୍ଲାନ, ଆଇ.ଆଇ.ଟି., ଖଡଗପୁର ସହଯୋଗରେ ପ୍ରସ୍ତୁତ କରାଯାଉଅଛି ଏବଂ ଧାତବ, ଇସ୍ପାତ, ଭିତ୍ତିଭୂମି, ପ୍ରଯୁକ୍ତି ଏବଂ ପରିଚର୍ଯ୍ୟା ପ୍ରଭୃତି କ୍ଷେତ୍ରରେ ପୁଂଜିନିବେଶକାରୀମାନେ ପୁଂଜି ବିନିଯୋଗ ପାଇଁ ଆଗ୍ରହ ପ୍ରକାଶ କରୁଛନ୍ତି ବୋଲି ମନ୍ତ୍ରୀ ଶ୍ରୀ ପାତ୍ର ପ୍ରକାଶ କରିଥିଲେ ।

ପୁରୀ, କୋଣାର୍କ ମଧ୍ୟରେ ସମୁଦ୍ର ତଟବର୍ତ୍ତୀ ସ୍ଥାନରେ ବେଦାନ୍ତ ୟୁନିଭରସିଟି ଖୋଲାଯିବା ପାଇଁ ସ୍ଥିର କରାଯାଇଛି ଏବଂ ଏଥିରେ ୯୩ଟି ବିଭାଗ ରହିବ ଓ ଦେଶ ବିଦେଶର ପ୍ରାୟ ଏକ ଲକ୍ଷ ଛାତ୍ରଛାତ୍ରୀ ଅଧ୍ୟୟନ କରିପାରିବେ । ବର୍ତ୍ତମାନ ସୁଦ୍ଧା ଷ୍ଟିଲ୍ କ୍ଷେତ୍ରରେ୪୩ଟି, ତାପଜ ବିଦ୍ୟୁତ୍ କ୍ଷେତ୍ରରେ ୧୩ଟି ଏବଂ ଆଲୁମିନିୟମ କ୍ଷେତ୍ରରେ ୫ଟି ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଛି ବୋଲି ମନ୍ତ୍ରୀ ଶ୍ରୀ ପାତ୍ର ପ୍ରକାଶ କରିବା ସହିତ ସୂଚନା ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଆଗାମୀ ଦିନରେ ୫୦୦ ମିଲିୟନ ଡଲାରର ସାମଗ୍ରୀ ରପ୍ତାନୀର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ବୋଲି କହିଥିଲେ ।

ଆମେରିକାର ଏନ୍.ଆର୍.ଆଇ., ଟ୍ରାଇର ସଭ୍ୟ ସିଲକନ୍‌ଭ୍ୟାଲିର ଶିଳ୍ପପତି ଶ୍ରୀ ପ୍ରଭୁଗୋଏଲ ଅଳ୍ପଦିନ ତଳେ ଓଡ଼ିଶା ଆସି ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରି ରାଜ୍ୟରେ ଆଇ.ଟି. ଏବଂ ହୋଟେଲ କ୍ଷେତ୍ରରେ ପୁଂଜି ବିନିଯୋଗ ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ପୁଂଜି ବିନିଯୋଗ ପାଇଁ ଓଡ଼ିଶା ଏକ ଟ୍ରେଜର ଆଇଲ୍ୟାଣ୍ଡ ବୋଲି ଶ୍ରୀ ଗୋଏଲ ଏହି ସମ୍ମିଳନୀରେ କହିଥିଲେ ।



# ଶ୍ରୀମନ୍ଦିର ପରିଚାଳନାରେ ଜୟୀ ରାଜଗୁରୁଙ୍କ ଭୂମିକା

ଭାସ୍କର ମିଶ୍ର

ଓଡ଼ିଶାର ସ୍ୱାଧୀନତା ସଂଗ୍ରାମରେ ଜୟୀ ରାଜଗୁରୁଙ୍କ ଭୂମିକା ଯେପରି ଗୁରୁତ୍ୱପୂର୍ଣ୍ଣ ଥିଲା, ଠିକ୍ ସେହିପରି ଶ୍ରୀମନ୍ଦିର ପରିଚାଳନା କ୍ଷେତ୍ରରେ ତଥା ମଠାନୁଷ୍ଠାନମାନଙ୍କରେ ତାଙ୍କର ପ୍ରଭାବ ସର୍ବୋପରି ଶ୍ରୀମନ୍ଦିରର ନୀତି ଓ ଯାନିଯାତ୍ରାରେ ତାଙ୍କର ସଂପୃକ୍ତି ଅତ୍ୟନ୍ତ ନିବିଡ଼ ରହିଥିଲା ।

ଜୟୀ ରାଜଗୁରୁଙ୍କ ଚାରି ପୁରୁଷ ସହିତ ଖୋର୍ଦ୍ଧା ଗଜପତି ମହାରାଜା, ଶ୍ରୀମନ୍ଦିର ଓ ମୁକ୍ତିମଣ୍ଡପ ସହ ଘନିଷ୍ଠ ସଂପର୍କ ରହିଥିଲା । ଜଣାଯାଏ ଯେ, ଜୟୀ ରାଜଗୁରୁଙ୍କ ପିତା ଓ ପ୍ରପିତାମହମାନେ ଅତ୍ୟନ୍ତ ବାଗ୍ମୀ, ପଣ୍ଡିତ ତଥା ବହୁ ଶାସ୍ତ୍ର ରଚନା କରିଥିଲେ । ତନ୍ମଧ୍ୟରେ ଜୟୀ ରାଜଗୁରୁଙ୍କ ପିତାମହ ଗଦାଧର ରାଜଗୁରୁଙ୍କ ରଚିତ ୧୮ ଖଣ୍ଡ ପୁସ୍ତକ ମଧ୍ୟରେ 'ଗଦାଧର ପଦ୍ଧତି' ଉଲ୍ଲେଖନୀୟ ଅଟେ । ଏହି ବଂଶର ପୂର୍ବ ପୁରୁଷ ଅର୍ଥାତ୍ ଶ୍ରୀକୃଷ୍ଣ ମହାପାତ୍ର 'ନୀତି ରତ୍ନାକର' ନାମକ ଧର୍ମଶାସ୍ତ୍ର ପ୍ରଣୟନ କରିଥିଲେ । ସେହିପରି ହଳଧର ମହାପାତ୍ର ଗଜପତି ହରେକୃଷ୍ଣ ଦେବଙ୍କର ପ୍ରଥମ ପତ୍ନୀ ସତ୍ୟଭାମା ଦେବୀଙ୍କର ଦୀକ୍ଷାଗୁରୁ ଥିଲେ । ସେହି ସମୟରେ ସେ 'ଶାରଦା ବାଜପେୟ' ଯଜ୍ଞ କରି ଶ୍ରେଷ୍ଠ ଯାଜ୍ଞିକ ଉପାଧି ଲାଭ କରିଥିଲେ ଓ ବୀରହରେକୃଷ୍ଣପୁର ଶାସନର ଦାନାଧ୍ୟକ୍ଷ ଥିଲେ । ଏତଦ୍‌ବ୍ୟତୀତ ଏହି ବଂଶର ନୀଳାମ୍ବର ମହାପାତ୍ର 'ସ୍ନାନୋତ୍ସବ' ସ୍ତୋତ୍ର ରଚନା କରି ପ୍ରତିଷ୍ଠା ଲାଭ କରିବା ସହିତ ଜମେଶ୍ୱର ମହାପାତ୍ର ଯଜ୍ଞ-ପୁରୋହିତ ହୋମ ଯଜ୍ଞାଦି ପ୍ରତିଷ୍ଠା କ୍ଷେତ୍ରରେ ବିଶେଷ ସୁନାମ ଅର୍ଜନ କରିଥିଲେ । ଏଥିରୁ ଅନୁମିତ ହୁଏ ଯେ, ତତ୍କାଳୀନ ସମାଜରେ ଜୟୀ ରାଜଗୁରୁଙ୍କ ପୂର୍ବ ପୁରୁଷମାନଙ୍କର ଗଜପତି ମହାରାଜା, ଶ୍ରୀମନ୍ଦିରର ମୁକ୍ତିମଣ୍ଡପ ସର୍ବୋପରି ରାଜଦରବାରରେ ବିଶେଷ ସୁଖ୍ୟାତି ରହିଥିଲା । ତାହା ଚରମ ପର୍ଯ୍ୟାୟରେ ପହଞ୍ଚିଥିଲା ଜୟୀ ରାଜଗୁରୁଙ୍କ କ୍ଷେତ୍ରରେ । ସେ ଏକାଧାରରେ ଜଣେ ବାଗ୍ମୀ, ପଣ୍ଡିତ, କୂଟନୀତିଜ୍ଞ, ରାଜଗୁରୁ, ବିଚାରକ ସର୍ବୋପରି ତତ୍କାଳୀନ ନାବାଳକ ଗଜପତି ମହାରାଜାଙ୍କ ଅଭିଭାବକ ତଥା ପ୍ରଧାନମନ୍ତ୍ରୀ ହୋଇପାରିଥିଲେ । ସମଗ୍ର ଖୋର୍ଦ୍ଧା, ଗଞ୍ଜାମ, ପୁରୀ, କଟକ ଇତ୍ୟାଦି ଅଞ୍ଚଳରେ ଜୟୀ ରାଜଗୁରୁଙ୍କ ଅଖଣ୍ଡ ପ୍ରଭାବ ଜାରି ରହିଥିଲା । ବିଶେଷ କରି ଓଡ଼ିଶା ଶାସନ ମରହଟ୍ଟାମାନଙ୍କ ହସ୍ତରୁ ଛିନ୍ନ ହୋଇ ବ୍ରିଟିଶମାନଙ୍କ ଅଧୀନକୁ ଆସିବାର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଜୟୀ ରାଜଗୁରୁଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା ।

ଏ ସଂପର୍କରେ ପୁରୀ ଜିଲ୍ଲା ଗେଜେଟିୟର ଓ ଅନ୍ୟାନ୍ୟ ପୁସ୍ତକରୁ ଜଣାଯାଏ ଯେ, 'In the year 1798 - Mukunda dev-II ascended to the Gaddi of Khurda. As he was a minor, Dewan Jay Krishna Rajguru was the defacto ruler.' ଗଜପତି ମହାରାଜା ମୁକୁନ୍ଦ ଦେବ ନାବାଳକ ଥିବାରୁ ଖୋର୍ଦ୍ଧା ସିଂହାସନ, ଶ୍ରୀମନ୍ଦିର ପରିଚାଳନା ଇତ୍ୟାଦିରେ ଜୟୀ ରାଜଗୁରୁଙ୍କ ବିଚାର ଥିଲା ଚୂଡ଼ାନ୍ତ ନିଷ୍ପତ୍ତି ।

ଅତୀତରେ ଶ୍ରୀମନ୍ଦିର ପରିଚାଳନାରେ ରାଜଗୁରୁମାନଙ୍କର ପ୍ରମୁଖ ଭୂମିକା ରହିଥିଲା । ସେମାନେ ବଡ଼ ପରିଚ୍ଛା, ମଧ୍ୟମ ପରିଚ୍ଛା ଓ ସାନ ପରିଚ୍ଛା ନାମରେ ମଧ୍ୟ ପରିଚିତ ହେଉଥିଲେ । ମନ୍ଦିରର ସକଳ ନୀତି, ଯାନିଯାତ୍ରା, ସେବକମାନଙ୍କ ମଧ୍ୟରେ ବିବାଦର ସମାଧାନ, ମୁକ୍ତିମଣ୍ଡପ ନିୟନ୍ତ୍ରଣ ଇତ୍ୟାଦିର ପ୍ରତ୍ୟକ୍ଷ ଦାୟିତ୍ୱରେ ସେମାନେ ରହୁଥିଲେ । ଜୟୀ ରାଜଗୁରୁ ଗଜପତି ମହାରାଜାଙ୍କର ରାଜଗୁରୁ ତଥା ପ୍ରଧାନ ପରାମର୍ଶଦାତା ରୂପେ କାର୍ଯ୍ୟ କରୁଥିବା ଯୋଗୁଁ ଶ୍ରୀମନ୍ଦିର ପରିଚାଳନା ଓ ପରିଚ୍ଛାମାନଙ୍କ ଉପରେ ତାଙ୍କର ଅଖଣ୍ଡ ପ୍ରଭାବ ରହିଥିଲା । ଏପରିକି ସେସମୟରେ ଅନ୍ୟତମ ମୁଖ୍ୟ ପରିଚ୍ଛା ଚନ୍ଦ୍ରଶେଖର ରାଜଗୁରୁ ଶ୍ରୀମନ୍ଦିର ପରିଚାଳନା ଦାୟିତ୍ୱରେ ଥାଇ ମଧ୍ୟ ଅନେକ ସମୟରେ ଅନୁପସ୍ଥିତ ରହୁଥିବାରୁ ଗଜପତିଙ୍କ ଆଦେଶକ୍ରମେ କିଛି ବର୍ଷ ପାଇଁ ଶ୍ରୀମନ୍ଦିର ପ୍ରଶାସନର ଅତିରିକ୍ତ ଦାୟିତ୍ୱ ଜୟୀ ରାଜଗୁରୁଙ୍କ ଉପରେ ନ୍ୟସ୍ତ ହୋଇଥିଲା । ଉଭୟ ସେନାଧ୍ୟକ୍ଷ ଓ ଶ୍ରୀମନ୍ଦିର ପରିଚାଳନାଭାର ଜୟୀ ରାଜଗୁରୁଙ୍କ ତତ୍ତ୍ୱାବଧାନରେ ରହିଥିଲେ ହେଁ ସେ ବ୍ୟସ୍ତ ବିବ୍ରତ ହୋଇନଥିଲେ । ବରଂ ପୁରୀ, ଖୋର୍ଦ୍ଧା ଉଭୟଠାରେ ଉପସ୍ଥିତ ରହି ଦକ୍ଷତାର ସହ କାର୍ଯ୍ୟଭାର ବୁଝୁଥିଲେ । ତାଙ୍କର ପ୍ରଚେଷ୍ଟାରେ ଶ୍ରୀମନ୍ଦିରର ସୁପରିଚାଳନା ନିମନ୍ତେ ନାଗପୁରରେ ରହୁଥିବା ମରହଟ୍ଟା ଶାସକ ଭୋନସଲାଙ୍କୁ ପ୍ରବର୍ତ୍ତାଇ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସେବାପୂଜା ଏବଂ ଯାନିଯାତ୍ରା ପାଇଁ ଆବଶ୍ୟକ ସମସ୍ତ ଅର୍ଥ ମରହଟ୍ଟା ରାଜକୋଷରୁ ଖର୍ଚ୍ଚ କରାଯିବା ପାଇଁ ନିଷ୍ପତ୍ତି କରାଇପାରିବାରେ ସମର୍ଥ ହୋଇଥିଲେ ।

ଏତଦ୍‌ବ୍ୟତୀତ ଜୟୀ ରାଜଗୁରୁଙ୍କ ଉଦ୍ୟମରେ ଶ୍ରୀଜଗନ୍ନାଥ ଧର୍ମର ପ୍ରଚାର ପ୍ରସାର ଏବଂ ଆର୍ଥିକ ଅବସ୍ଥାର ଉନ୍ନତି ପାଇଁ ଖୋର୍ଦ୍ଧା ରାଜାଙ୍କ ତରଫରୁ ବିଭିନ୍ନ ପ୍ରାଦେଶିକ ତଥା ସାମନ୍ତ ରାଜାମାନଙ୍କୁ ଶ୍ରୀମନ୍ଦିରରେ ଚାମର ଆଲଟ ସେବା, ବିଶେଷ ଦର୍ଶନର ସୁବିଧା, ଲାଲ ପାଲିଙ୍କି, ହାତୀ, ଛତି ଏବଂ କାହାଳୀ ସହ ଶ୍ରୀକ୍ଷେତ୍ରକୁ ପ୍ରବେଶ ନିମନ୍ତେ ଅନୁମତି ଦେବା, ବିଭିନ୍ନ ସମ୍ମାନ ଉପାଧି ପ୍ରଦାନ ଇତ୍ୟାଦି ତେଲଗୁ ପୋଥି 'ଶ୍ରୀଜଗନ୍ନାଥ ସ୍ଥଳବୃତାନ୍ତମ୍'ରେ ଉଲ୍ଲେଖ ରହିଥିବା ସଂପର୍କରେ ଗବେଷକ ନୀଳକଣ୍ଠ ମିଶ୍ରଙ୍କ ରଚିତ 'ସ୍ୱାଭିମାନର ପ୍ରତୀକ ଜୟୀ ରାଜଗୁରୁ' ପ୍ରବନ୍ଧରୁ ଜଣାଯାଏ ।

ଶ୍ରୀମନ୍ଦିର ସେବକ ଓ ଶ୍ରୀକ୍ଷେତ୍ରର ମଠାଧିପତିମାନଙ୍କ ଉପରେ ଜୟୀ ରାଜଗୁରୁଙ୍କ କର୍ତ୍ତୃତ୍ୱ ଓ ପ୍ରଭାବ ରହିଥିବା ସଂପର୍କରେ ଏହି ଲେଖକଙ୍କ ଦ୍ୱାରା ଗଙ୍ଗାମାତା ମଠରୁ ସଦ୍ୟତମ ଉଦ୍ଧାର କରାଯାଇଥିବା ଚିଟାଉରୁ ଜଣାଯାଏ । ଘଟଣାଟି ଥିଲା ୧୮୦୪ ମସିହାରେ । ଇଂରେଜମାନଙ୍କର ଖୁରୁଧା ଗଡ଼ ଆକ୍ରମଣ ସମୟରେ ଗଜପତିଙ୍କ ଉପରେ ବିପଦର ଆଶଙ୍କା କରି ଜୟୀ ରାଜଗୁରୁ ଏକ ଚିଟାଉ ପୁରୀ ଗଙ୍ଗାମାତା ମଠର ତତ୍କାଳୀନ ମହନ୍ତ ନରୋତ୍ତମ ଦାସଙ୍କ ନିକଟକୁ ପ୍ରେରଣ କରିଥିଲେ । ଅଦ୍ୟାବଧି ସେହି ଐତିହାସିକ ଚିଟାଉଟି ଗଙ୍ଗାମାତା ମଠରେ ସୁରକ୍ଷିତ ହୋଇ ରହିଅଛି । ଚିଟାଉଟିରେ ଲେଖାଟି ଏହିପରି ଥିଲା । ଯଥା-

'ପୁରୁଷୋତ୍ତମ କ୍ଷେତ୍ର ଉଆଁସ ଦାଣ୍ଡ ଗଙ୍ଗାମାତା ଗୋସାଇଁଙ୍କୁ ଚିଟାଉ ଏହିକି କମ୍ପାନୀ ଗୋପୀନାଥଙ୍କ ଆଡୁ ଉଆସ ଅକ୍ତିଆର କରିଅଛି ଏଠାରେ ଯା' ହେବାର ହେବ ଆମ୍ଭ ଅବସ୍ଥା ଆମ୍ଭେ ବୁଝିବୁ ମାତ୍ର ଭବିଷ୍ୟତ ଆଶାକୁ ଦୁର୍ଗାଚରଣ ସିଂହଙ୍କ ତୁଲେ ମହାଶ୍ରମଙ୍କୁ ବାହୁଡ଼ାଇ ଦେଲୁ ଗଡ଼ ଅକ୍ତିଆର ବେଳକୁ ସେ ଘାଟି ଡେଇଁଥିବେ ତୁମେ ଏହାଙ୍କୁ କଣ୍ଟି ଶାଢ଼ୀ ଦେଇ ମଠେ ବା ଅନ୍ୟତ୍ର ସୁବିଧା ମତେ ରଖାଇବ ଯେପରିକି ପ୍ରକଟ ନହେବ ସୁଦ୍ଧିରେ ରଖାଇବ ଏ କାର୍ଯ୍ୟକୁ ବଡ଼ ପରିଛାକୁ ମଣି ବୁଝାଇବ ତୁମ୍ଭେ ମହାପ୍ରସାଦ ସେବାକୁ ନିତ୍ୟାନି ସକାଳ ଧୂପରେ ଥାଳି ଓଳିଏ ଦ୍ୱିପ୍ରହର ଧୂପର ଆରିସା ମୂର୍ତ୍ତିଏ ମଠ ଯୋଗାଣିଆ ପଠାଇ ଦେବ ମଠ ବେହେରା ଖୁଣ୍ଟିଆ ମଇଲମ କରପଲ୍ଲବ ମୂର୍ତ୍ତିଏ ତୁଳସୀ ସେବାକୁ ଦେବ ହାସିଲ ତଲବ ନ କରିବ ଭୋଗ ପରିଛା ପାତ୍ରୁଷୀ ଛତିଶା ନିଯୋଗ ନାଏକଙ୍କୁ ସକଳ ଆଜ୍ଞାମଙ୍କୁ ଏ ପତ୍ର ଦେଖାଇବ ସେ ଭଣ୍ଡାର ନିକାପ ତୁଲୁ ଭେଟ ଘାଟ କଉଡ଼ିର ମହାଶ୍ରମଙ୍କ ଆଜ୍ଞା ପ୍ରମାଣେ ରଖି ଖୁରୁଧା ପଠାଇବ ଶୋଧ କରି ଚାରି ଦୁଆର ମୁଦ କରିବ ଘାଟଛାଡ଼ ରୋକ କରିବ ମହାଶ୍ରମଙ୍କୁ ବିଜେ କରିବ ।' ଚିଟାଉକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ୧୮୦୪ ମସିହା ଅକ୍ଟୋବର ମାସରେ ଜୟୀ ରାଜଗୁରୁଙ୍କ ସ୍ୱହସ୍ତ ଲିଖିତ ଏହି ଚିଟାଉଟିରେ ଗଙ୍ଗାମାତା ମଠ ମହନ୍ତ, ଛତିଶା ନିଯୋଗ ନାଏକ ପାଟଯୋଷୀ ମହାପାତ୍ର ଶ୍ରୀମନ୍ଦିର ପରିଛା, ବେହେରା ଖୁଣ୍ଟିଆ, ଭଣ୍ଡାର ନିକାପ ଇତ୍ୟାଦି ସେବକମାନଙ୍କୁ ଶ୍ରୀମନ୍ଦିରର ସୁରକ୍ଷା ତଥା ଗଜପତି ମହାରାଜାଙ୍କ ସୁରକ୍ଷା ନିମିତ୍ତ ଗୋପନୀୟ ଭାବେ କେତେକ କାର୍ଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ବୋଧହୁଏ ଏହା ହିଁ ଶ୍ରୀମନ୍ଦିର ତଥା ଗଜପତି ମହାରାଜାଙ୍କ ସୁରକ୍ଷା ସଂପର୍କୀୟ ଶେଷ ଐତିହାସିକ ହୁକୁମନାମା । ଜୟୀ ରାଜଗୁରୁଙ୍କ ପ୍ରେରିତ ବହୁ ଗୁରୁତ୍ୱପୂର୍ଣ୍ଣ ଚିଟାଉ, ଚିଠି, ହୁକୁମନାମା ଏବେବି କେତେକ ମଠ ତଥା ସେବାୟତ ବ୍ୟକ୍ତି ବିଶେଷଙ୍କ ଗୃହରେ ଅସୁରକ୍ଷିତ ଭାବେ ରହିଥିବା ମନେ ହୁଏ । ଏ ବିଷୟରେ ବିଶେଷ ଅନୁସନ୍ଧାନ ତଥା ଗବେଷଣା ହୋଇପାରିଲେ ବହୁ ତଥ୍ୟ ଉନ୍ମୋଚିତ ହୋଇପାରିବ ।

ଉପ ପ୍ରଶାସକ
ଶ୍ରୀମନ୍ଦିର ପ୍ରଶାସନ, ପୁରୀ



ଗାନ୍ଧୀ ଜୟନ୍ତୀ ଅବସରରେ ଜୟଦେବ ଭବନଠାରେ ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଏବଂ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ଏକ ଭଜନ ସମାରୋହ ଉଦ୍‌ଘାଟନ କରୁଛନ୍ତି । ସୂଚନା ଓ ଲୋକ ସଂପର୍କ ବିଭାଗର କମିଶନର ତଥା ଶାସନ ସଚିବ ଶ୍ରୀ ଦିଗମ୍ବର ମହାନ୍ତି ଏବଂ ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି ଉପସ୍ଥିତ ଅଛନ୍ତି । ୨.୧୦.୦୬

# ଫିରିଙ୍ଗି କଳି ଭାରତ ଓ ଜୟୀ ରାଜଗୁରୁ

ସୁନୀଲ ରଥ

ଊନବିଂଶ ଶତାବ୍ଦୀର ପ୍ରଥମ ଦଶକରେ ତୃତୀୟ ବର୍ଷରେ ବ୍ରିଟିଶ୍ ସାମ୍ରାଜ୍ୟବାଦର ସାରଥି ଇଷ୍ଟ ଇଣ୍ଡିଆ କମ୍ପାନୀ ଓଡ଼ିଶାର ଶେଷ ସ୍ୱାଧୀନଗଡ଼ ତଥା ଓଡ଼ିଶାର ଗଜପତିଙ୍କ ରାଜଧାନୀ ଖୋର୍ଦ୍ଧାକୁ କବଳିତ କଲା । ଇଂରେଜଙ୍କ ଭୋଜନୀତି, କୂଟନୀତି ଏବଂ ଅର୍ଥନୈତିକ ଶୋଷଣର ଶୀକାର ହୋଇ ବାଲେଶ୍ୱର, କଟକଠାରୁ ଗଞ୍ଜାମ ଯାଏଁ ବହୁ ରାଜା ତ୍ରାହି ତ୍ରାହି ଡାକ ଦେଲେ ଏବଂ ଇଂରେଜଙ୍କ କବଳରୁ ନିଜକୁ ମୁକ୍ତ କରିବା ପାଇଁ ବିଦ୍ରୋହ ପାଇଁ ଚିନ୍ତା କଲେ । ଏହି ବିଦ୍ରୋହର ସ୍ୱର ମଧ୍ୟ ପ୍ରଥମେ ଶୁଣାଗଲା ଖୋର୍ଦ୍ଧା ମାଟିରୁ । ସମ୍ଭବତଃ ଇଂରେଜମାନଙ୍କ ବିରୁଦ୍ଧରେ ସାରା ଭାରତରେ ପ୍ରଥମ ମୁକ୍ତି ସଂଗ୍ରାମ ସ୍ୱର ଏଇଠାରୁ ହିଁ ଆରମ୍ଭ ହୋଇଥିଲା ଏବଂ ଏହାର କର୍ଣ୍ଣଧାର ଥିଲେ ଜୟକୃଷ୍ଣ ରାଜଗୁରୁ ମହାପାତ୍ର ବା ଜୟୀ ରାଜଗୁରୁ ।

ଇଂରେଜମାନଙ୍କର ବିଶ୍ୱାସଘାତକତା ତଥା ମରହଟ୍ଟାମାନଙ୍କ ଦ୍ୱାରା ବାରମ୍ବାର ଲୁଣ୍ଠନର ସମ୍ମୁଖୀନ ହୋଇମଧ୍ୟ ନିଜର ସ୍ୱାଧୀନ ମର୍ଯ୍ୟାଦା ଟିକକ ରକ୍ଷା କରିଥିବା ଖୋର୍ଦ୍ଧାର ରାଜାଙ୍କୁ ନିଜର ଅଧୀନସ୍ଥ ବୋଲି ଘୋଷଣା କରି ସମସ୍ତ ରାଜକୀୟ କାର୍ଯ୍ୟ କମ୍ପାନୀ ତା'ହାତକୁ ନେବା ଆରମ୍ଭ କଲା । ଫଳରେ କମ୍ପାନୀର କର୍ତ୍ତୃତ୍ୱକୁ ଉପେକ୍ଷା କରି ନିଜକୁ ସ୍ୱାଧୀନ ଭାବରେ ଦେଖିବାର ଅଧିକାରକୁ ଜାହିର କରି ଜାତି ଓ ଦେଶପ୍ରାଣ ତଥା ନିର୍ଭୀକ ଜୟୀ ରାଜଗୁରୁ ଇଂରେଜମାନଙ୍କ ବିରୁଦ୍ଧରେ ପ୍ରତ୍ୟକ୍ଷ ସଂଗ୍ରାମ ଘୋଷଣା କରିଦେଲେ । ଯଦ୍ୱାରା କମ୍ପାନୀର କ୍ରୋଧର କେନ୍ଦ୍ରବିନ୍ଦୁ ରାଜା ମୁକୁନ୍ଦ ଦେବ ଦ୍ୱିତୀୟ ନହୋଇ, ତାଙ୍କର ମନ୍ତ୍ରଣାଦାତା ତଥା ରାଜଗୁରୁ ଶ୍ରୀ ଜୟକୃଷ୍ଣ ମହାପାତ୍ର ହୋଇଥିଲେ ।

ଏପରିକି ଜୟୀ ରାଜଗୁରୁଙ୍କୁ ମନ୍ତ୍ରଣାଦାତା ପଦବୀରୁ ବିତାଡ଼ିତ କରି କମ୍ପାନୀ ସହ ସନ୍ଧି କଲେ ରାଜାଙ୍କୁ ତତ୍କାଳୀନ ସମୟରେ ପଚାଶ ହଜାର ଟଙ୍କା ପୁରସ୍କାର ପ୍ରଦାନ ପାଇଁ ମଧ୍ୟ ଲୋଭ ଦେଖାଯାଇଥିଲା । ତା'ସହିତ ଧମକ ମଧ୍ୟ ଥିଲା ଏ ପ୍ରସ୍ତାବ ଗ୍ରହଣ ନକଲେ କମ୍ପାନୀ ପ୍ରଦତ୍ତ ସୁବିଧା ସୁଯୋଗ ସବୁ ପ୍ରତ୍ୟାହାରର ଯେଉଁ ପ୍ରସ୍ତାବକି ଜୟୀ ରାଜଗୁରୁଙ୍କ ପ୍ରରୋଚନାରେ ନାବାଳକ ରାଜା ପ୍ରତ୍ୟାଖ୍ୟାନ କରିଥିଲେ । ପୁନର୍ବାର ୧୮୦୮ ଫେବୃଆରୀ ୨୦ ତାରିଖରେ ରାଜାଙ୍କୁ ନିର୍ଦ୍ଦେଶ ଦିଆଗଲା କର୍ଣ୍ଣେଲ ହାରକୋଟଙ୍କ ସହ ସାକ୍ଷାତ ପାଇଁ ଜୟୀ ରାଜଗୁରୁଙ୍କ ବାରବାଟୀ ଦୁର୍ଗକୁ ପ୍ରେରଣ ପାଇଁ । ରାଜଗୁରୁ କର୍ଣ୍ଣେଲ ହାରକୋଟଙ୍କ ଉଦ୍ଦେଶ୍ୟ ବୁଝିପାରି ଦେଖା କରିବାକୁ ସମ୍ମତ ହୋଇନଥିଲେ ।

ଏ ସମସ୍ତ ଘଟଣା ପରେ ତଥା ଇଂରେଜମାନଙ୍କ ଅଧିକୃତ ଗଞ୍ଜାମ ଓ ବାରବାଟୀ ଦୁର୍ଗ ସହ ସଂକ୍ଷିପ୍ତ ପଥରେ ଖୋର୍ଦ୍ଧା ରାଜ୍ୟ ଆସୁଥିବାରୁ ଏହି ରାଜ୍ୟ ଦେଇ ଇଂରେଜମାନଙ୍କ ଗମନାଗମନରେ ବାଧା ନଦେବା ପାଇଁ ଏକ ଲକ୍ଷ ଟଙ୍କା ପ୍ରଦାନ ତଥା ମରହଟ୍ଟାମାନଙ୍କ କବଳରୁ ମୁକ୍ତ କରିଥିବା ଖୋର୍ଦ୍ଧା ରାଜ୍ୟର ଚାରିପ୍ରଗଣା ଲେମ୍ବେଇ, ସିରେଇ, ରାହାଙ୍ଗ ଏବଂ ଚବିଶ କୁଦ ରାଜାଙ୍କୁ ପ୍ରଦାନର ଚୁକ୍ତି ହୋଇଥିଲା । କେବଳ ଏ ଚୁକ୍ତି କମ୍ପାନୀ ଖିଲାପ କରିଥିଲା ତା' ନୁହଁ ଅଧିକନ୍ତୁ ଏହି ସୁଯୋଗରେ ଖୋର୍ଦ୍ଧା ରାଜ୍ୟକୁ ଦଖଲ କରି ନେବାର ଘୋଷଣାପତ୍ର ମଧ୍ୟ ଜାରି କରି ଦେଇଥିଲା ।

ଜୟୀ ରାଜଗୁରୁ ହାରକୋଟଙ୍କ ସହ ସାକ୍ଷାତ ପାଇଁ ଯିବା ପରିବର୍ତ୍ତେ, ସେମାନଙ୍କର ବିଶ୍ୱାସଘାତକତାର ପ୍ରତିରୋଧ କରି ନିଜକୁ ସ୍ୱାଧୀନ ଦେଖିବାର ମାନସିକତାରେ ୧୮୦୪ ମସିହା ମାର୍ଚ୍ଚ ମାସରେ ବାରବାଟୀ ଦୁର୍ଗ ଅବରୋଧ ପାଇଁ ଦୁଇ ହଜାର ସୈନ୍ୟଙ୍କ ସହ ଯାତ୍ରା କଲେ । ଏ ଆକସ୍ମିକ ଚଢ଼ାଉରେ ଉପାୟହୀନ କର୍ଣ୍ଣେଲ ହାରକୋଟ ବାଧ ହୋଇ ୧୮୦୩ରେ ସନ୍ଧି ପ୍ରସ୍ତାବ ଅନୁସାରେ ପୁରୀ ରାଜାଙ୍କୁ ଦେବାକୁ ଥିବା ଲକ୍ଷେ ଟଙ୍କାରୁ ୪୦ ହଜାର ଟଙ୍କା ପ୍ରଦାନ କଲେ । ଯେଉଁ ଟଙ୍କାକୁ ରାଜାଙ୍କ ବ୍ୟକ୍ତିଗତ ବିଳାସ ପାଇଁ ବ୍ୟୟ ନକରି ଜୟୀ ରାଜଗୁରୁ ଭାଙ୍ଗି ପଡ଼ିଥିବା ରାଜ୍ୟର ଅର୍ଥନୀତି ଓ ସାମରିକ ଶକ୍ତିକୁ ସଜାଡ଼ିବାରେ ବ୍ୟୟ କଲେ । ଫଳରେ ସାମୟିକ ଭାବରେ ରାଜାଙ୍କ କୋପଦୃଷ୍ଟି ଓ ଅମାତ୍ୟମାନଙ୍କଠାରୁ ଅର୍ଥ ତୋଷରପାତର ନିନ୍ଦା ମଧ୍ୟ ସହିବାକୁ ତାଙ୍କୁ ପଡ଼ିଥିଲା ।

ଅବଶ୍ୟ ଏହି ଦୁଃସାହସ ଓ ତତ୍ପରବର୍ତ୍ତୀ ବିଦ୍ରୋହ ଏବଂ ସଂଗ୍ରାମ ପାଇଁ ରାଜା ମୁକୁନ୍ଦ ଦେବଙ୍କୁ ନୁହଁ ଜୟୀ ରାଜଗୁରୁଙ୍କୁ ଇଂରେଜମାନଙ୍କ ଦ୍ୱାରା ବିଦ୍ରୋହୀ ଘୋଷିତ ଓ ପ୍ରଥମ ଶହୀଦ୍ ହେବାର ସୌଭାଗ୍ୟ ପାଇଥିବା ଏ ମହାନ୍ ସଂଗ୍ରାମୀଙ୍କ ଫାସୀଦଣ୍ଡ ସମଗ୍ର ମାନବ ଇତିହାସର

ଏକ ବିରଳ ଘଟଣା । ଯଦ୍ୱାରା ଜୟୀ ରାଜଗୁରୁ ଦୁଇଫାଳ ହୋଇ ଚିରି ହୋଇଯାଇଥିଲେ । କେବଳ ତା' ନୁହଁ ତାଙ୍କ ଶବକୁ ସେମିତି ଝୁଲି ରହିବାକୁ ଛାଡ଼ି ଦେଇ ସାଧାରଣ ଜନତା ମନରେ ଇଂରେଜ ବିରୁଦ୍ଧରେ ବିଦ୍ରୋହର ପରିଣତି ପ୍ରତି ଭୟ ସୃଷ୍ଟିର ନିଦର୍ଶନ ଛାଡ଼ି ଦିଆଯାଇଥିଲା ।

ଜୟୀ ରାଜଗୁରୁଙ୍କ ସଂଗ୍ରାମୀ ଜୀବନକୁ ନେଇ ଇତଃସ୍ତତଃ ଭାବରେ ଅବଲୁପ୍ତ ଅବସ୍ଥାରେ ରହିଥିବା ବହୁତଥ୍ୟ ମିଳିଥିଲେ ହେଁ ମଧୁବିପ୍ରଙ୍କ ଦ୍ୱାରା ପୌରାଣିକ କାବ୍ୟ ରଚନାଶୈଳୀରେ ରଚିତ ଗ୍ରନ୍ଥ 'ଫିରିଙ୍ଗି କଳି ଭାରତ'ରେ ଏ ସମସ୍ତ ତଥ୍ୟ ଏକତ୍ର ମିଳିଥାଏ । 'ଫିରିଙ୍ଗି କଳି ଭାରତ'ର ଐତିହାସିକତା ପ୍ରତି ଓ ତାହାର ଯୌକ୍ତିକତାକୁ ନେଇ ବହୁ ଐତିହାସିକ ପ୍ରଶ୍ନ ଉଠାଇଛନ୍ତି । କିନ୍ତୁ ଏହାର ଯଥାଯଥ ବିଶ୍ଳେଷଣ କଲେ ଆମେ ଲକ୍ଷ୍ୟ କରିପାରିବା ପୌରାଣିକତା ମଧ୍ୟରେ ସମସ୍ତ ଐତିହାସିକ ତଥ୍ୟ ମହଜୁଦ ରହିଛି । ସେ ସମସ୍ତ ପ୍ରାମାଣିକତାର ପ୍ରଦାନ ହିଁ ଏ ପ୍ରବନ୍ଧର ଲକ୍ଷ୍ୟ ।

ମଧୁସୂଦନ ବିପ୍ରଙ୍କ ଦ୍ୱାରା ରଚିତ ଗ୍ରନ୍ଥ 'ଫିରିଙ୍ଗି କଳି ଭାରତ' ଯଦିଓ ପୌରାଣିକ ଶୈଳୀରେ ଲେଖାଯାଇଛି ତଥାପି ଏହାକୁ ଏକ ଐତିହାସିକ ଦଲିଲ କହିଲେ ଭୁଲ୍ ହେବ ନାହିଁ । ଅବଶ୍ୟ ଏହା ସତ୍ୟ ଯେ, ଐତିହାସିକତ୍ୱ ପ୍ରମାଣ କରିବା ପାଇଁ ଇତିହାସକାରମାନେ ଯେଉଁ ଧାରା, ଯୁକ୍ତି, ନିୟମାଦିକୁ ନେଇ ଏବଂ ଘଟଣାକ୍ରମର ସତ୍ୟାସତ୍ୟକୁ ନିରୀକ୍ଷଣ କରି କୌଣସି ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚିଥାନ୍ତି, ସେହି ସମସ୍ତ ବିଷୟକୁ ଆଧାର କଲେ ହୁଏତ 'ଫିରିଙ୍ଗି କଳି ଭାରତ'ର ଐତିହାସିକ ପ୍ରାମାଣିକତା ଦିଗରୁ କିଛିଟା ନିରାଶ ହେବାକୁ ପଡ଼ିପାରେ । ତେବେ ଏଠାରେ ଗୋଟିଏ କଥା ମନେ ରଖିବାକୁ ହେବ ଯେ, ପ୍ରାଚୀନ ଭାରତୀୟ ତଥା ଉତ୍କଳୀୟ ଇତିହାସ - ସାହିତ୍ୟକାର ଗଣ ସମକାଳୀନ ଏବଂ କିଞ୍ଚିତ ପୂର୍ବବର୍ତ୍ତୀ ଘଟଣାକୁ ନେଇ ତାହାର ପରିପ୍ରକାଶ କାବ୍ୟ ରଚନା ଶୈଳୀରେ କିମ୍ବା ପୁରାଣ ରଚନା ଶୈଳୀରେ ଉପସ୍ଥାପିତ କରିଥାନ୍ତି । ଏ ଦୃଷ୍ଟିରୁ ବିବେଚନା କଲେ ଚତୁର୍ଦ୍ଦଶପାଦୀ ବୃତ୍ତରେ ରଚିତ ଏହି ଗ୍ରନ୍ଥର ପୌରାଣିକ ଦିଗଟି ଯେତିକି ହାସ୍ୟାସ୍ପଦ ମନେହୁଏ, ଠିକ୍ ସେତିକି ତା'ର ଐତିହାସିକ ଗୁରୁତ୍ୱଟି ବେଶ୍ ବାସ୍ତବ ଏବଂ ଯୁକ୍ତି ସଙ୍ଗତ ମନେହୁଏ ।

ଗ୍ରନ୍ଥ ରଚନା କାଳ ସଂପର୍କରେ ବିପ୍ର ମଧୁସୂଦନ ଗ୍ରନ୍ଥର ଅନ୍ତରେ ଉଲ୍ଲେଖ କରିଛନ୍ତି ଯେ ଏହା ବାରଶ ବୟାଳିଶ ସାଲ ମେଷ ପଚିଶ ଦିନରେ ସଂପୂର୍ଣ୍ଣ କରିଛନ୍ତି । ଅର୍ଥାତ୍ ଇଂରେଜ ଅପ୍ରେଲ ମାସ ୧୮୩୫ ମସିହାରେ ଏ ଗ୍ରନ୍ଥ ରଚନାର ସମାପ୍ତି ଘଟିଛି । ଦ୍ୱିତୀୟତଃ ଏହି 'ଫିରିଙ୍ଗି କଳି ଭାରତ'ରେ ସେ ଗଡ଼ତାପଙ୍ଗର ଇଂରେଜଙ୍କ ସହ ସଂଘଟିତ ଯୁଦ୍ଧକୁ ପ୍ରତ୍ୟକ୍ଷ ଭାବରେ ଚାରିଦିନ କାଳ ସେହି ଅଞ୍ଚଳରେ ରହି ଅବଲୋକନ କରିଛନ୍ତି ବୋଲି ସ୍ୱୀକାର କରନ୍ତି । ତୃତୀୟତଃ ମାଧବ ରାଉତଙ୍କ ବନ୍ଦୀରୁ ମୁକ୍ତ ହେବା ପରେ ମଧୁସୂଦନ ବିପ୍ର ତାଙ୍କଠାରୁ ଇଂରେଜଙ୍କ ଖୋର୍ଦ୍ଧା ଓ ତାପଙ୍ଗ ଆକ୍ରମଣର ବିବରଣୀ ଶୁଣିଥିବା କଥା ମଧ୍ୟ ଉଲ୍ଲେଖ କରିଛନ୍ତି ।

ତାପଙ୍ଗ ଯୁଦ୍ଧର ସମୟ ହେଉଛି ୧୮୨୭ ମସିହା । ସେହି ସମୟଠାରୁ ଆମେ ଗଜପତି ମୁକୁନ୍ଦ ଦେବଙ୍କ (୧୭୯୮-୧୮୧୭) ସିଂହାସନ ଆରୋହଣଠାରୁ ଜୟକୃଷ୍ଣ ରାଜଗୁରୁ ମହାପାତ୍ରଙ୍କୁ ଫାସୀ ପ୍ରଦାନ (୧୮୦୬) କାଳକୁ ଫେରିଲେ ତାହା ଏ ଯୁଦ୍ଧର ୨୧ ବର୍ଷରୁ ୨୮ ବର୍ଷ ତଳର ଘଟଣା । ଏହାକୁ ଭିତ୍ତିକରି ଆକଳନ କଲେ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ମଧୁବିପ୍ର ପ୍ରାୟତଃ ମୁକୁନ୍ଦ ଦେବଙ୍କ ସମସାମୟିକ ହେବାର ସମ୍ଭାବନାକୁ ଉପେକ୍ଷା କରାଯାଇନପାରେ । ଏଥିରୁ ବୁଝିବାରେ ଅସୁବିଧା ନାହିଁ ଯେ 'ଫିରିଙ୍ଗି କାଳ ଭାରତ'ର କଥାବସ୍ତୁ ଜନଶ୍ରୁତିକୁ ଆଧାର କରି ରଚିତ ହେବା ଅପେକ୍ଷା ବେଶୀ ଭାବରେ ପ୍ରତ୍ୟକ୍ଷାନୁଭୂତି ଆଧାରିତ । ପୁନଶ୍ଚ ଏ ଗ୍ରନ୍ଥରେ ବର୍ଣ୍ଣିତ ବିଭିନ୍ନ ଇଂରେଜ ସାହେବମାନଙ୍କର ନାମ ପଦବୀ, ସେମାନଙ୍କ ଆକ୍ରମଣ କରିବାର କାରଣ, ଆକ୍ରମଣର ପଥ ଓ ଶୈଳୀ, ମରହଟ୍ଟାଙ୍କ ସହ ଯୁଦ୍ଧ ଓ ସନ୍ଧି ଆଦିକୁ ଲକ୍ଷ୍ୟ କଲେ ଭୌଗୋଳିକ ତଥା ଐତିହାସିକ ଦିଗରୁ 'ଫିରିଙ୍ଗି କଳି ଭାରତ'କୁ ହେୟଜ୍ଞାନ କରାଯାଇନପାରେ ।

ଆଲୋଚନାର ପରିପ୍ରେକ୍ଷୀରେ 'ଜୟୀ ରାଜଗୁରୁ'ଙ୍କ ସଂପର୍କିତ ଘଟଣାକ୍ରମ, ଜୟୀ ରାଜଗୁରୁଙ୍କ ବୀରତ୍ୱ, ଦେଶପ୍ରେମ ଓ ଇଂରେଜମାନଙ୍କ ସହ ଶତ୍ରୁତାକୁ ସତ୍ୟର ଖୁବ୍ ନିକଟବର୍ତ୍ତୀ ବୋଲି ଗ୍ରହଣ କରିବାକୁ ଆମ୍ଭେ ବାଧ ହେବା । ପୁନଶ୍ଚ ଆଉ ଗୋଟିଏ ଦିଗରୁ ଦେଖିଲେ ମଧ୍ୟ, ସେ ସମୟରେ ପ୍ରଚାର ମାଧ୍ୟମ ବସ୍ତୁତ କିଛି ନଥିଲା । କେବଳ ଲୋକମୁଖରୁ ଶୁଣି ଏହା ପ୍ରଚାରିତ ହେଉଥିଲା । ଯାହାର ପ୍ରଭାବ ସେତେ ସୁଦୂର ପ୍ରସାର ନଥିଲା । ହୁଏତ ସେପରି କ୍ଷେତ୍ରରେ ଏ ସମ୍ଭାବନା ସୃଷ୍ଟି ହୋଇଥାନ୍ତା ବିପ୍ର ମଧୁସୂଦନ ମୁନି ଲୋକମୁଖରୁ ଶୁଣି ଏ କଥାକୁ ପୁରାଣ ଗ୍ରନ୍ଥ ଆକାରରେ ଉପସ୍ଥାପିତ କରିଛନ୍ତି । ଅବଶ୍ୟ ଏହା ସତ୍ୟ ଯେ, କାବ୍ୟ ରଚନା କାଳରେ କବିର କଳ୍ପନା କିଛି ପରିମାଣରେ ଐତିହାସିକ ସତ୍ୟତାର ବାଧା ଉପୁଯାଏ । ଏହାର ଅର୍ଥ ନୁହଁ ଯେ 'ଫରିଙ୍ଗି କଳି ଭାରତ' କଳ୍ପନା ପ୍ରସୂତ ।

ମଧୁ ବିପ୍ରଙ୍କ ଏ ଗ୍ରନ୍ଥର ପ୍ରଥମ ଅଧ୍ୟାୟରୁ ହିଁ ଐତିହାସିକ ସତ୍ୟତାର ଉପଲବ୍ଧି ହୋଇଥାଏ । ପ୍ରଥମ ଅଧ୍ୟାୟରେ ମୁକୁନ୍ଦ ଦେବ ତାଙ୍କ ରାଜତ୍ୱର ସପ୍ତମ ଅଙ୍କରେ ବରୁଣାଇ ଗଡ଼ରୁ ପୁରୀ ଆଗମନ କରି ଶ୍ରୀ ଲୋକନାଥଙ୍କ ଦର୍ଶନ କରିଥିଲେ (୧/୭୦) । 'ଫିରିଙ୍ଗି କଳି ଭାରତ' ଅନୁସାରେ ରାଜାଙ୍କ ଆଗମନ ଦିବସ ହେଉଛି ମକର ମାସ ୧୩ ଦିନ ।[୨] ରାଜାଙ୍କ ସିଂହାସନ ଆରୋହଣର ଦିବସକୁ ଯଦି ସେପ୍ଟେମ୍ବର ୬ ତାରିଖ ୧୭୯୮ ବୋଲି ଗ୍ରହଣ କରାଯାଏ[୩], ତେବେ ସପ୍ତମ ଅଙ୍କକୁ ଶ୍ରୀକ୍ଷେତ୍ର ଆଗମନ ସମୟ ହେବ ଡିସେମ୍ବର ମାସ ୧୮୦୨ ମସିହା ତଥା ଏହି ସମୟରେ ହିଁ ରଣପୁର, ବାଙ୍କୀ ସହ ଯୁଦ୍ଧରୁ ନିବୃତ୍ତ ହୋଇ ମୁକୁନ୍ଦ ଦେବଙ୍କ ଅର୍ଥନୈତିକ ସ୍ଥିତି ବିକଳ ହୋଇଯାଇଥିଲା ।[୪]

ଅବଶ୍ୟ ଏ ଘଟଣା ଇଂରେଜମାନଙ୍କର ଖୋର୍ଦ୍ଧା ଆକ୍ରମଣ ଓ ପୁରୀ ଆଗମନର ପୂର୍ବବର୍ତ୍ତୀ ଘଟଣା । ରାଜାଙ୍କ ନାବାଳକର ସୂଚନା ମଧ୍ୟ ଏହି ଅଧ୍ୟାୟରୁ ମିଳିଥାଏ ।[୫]

ସେହିବର୍ଷ (୧୮୦୨) ମୁକୁନ୍ଦ ଦେବଙ୍କ ଶ୍ରୀକ୍ଷେତ୍ରରେ ଅବସ୍ଥାନ କାଳରେ ହିଁ, ରାଜାଙ୍କ ବିରୁଦ୍ଧରେ ପୂର୍ବ ଶତ୍ରୁତାକୁ କେନ୍ଦ୍ର କରି ଆଖପାଖର ସାମନ୍ତ ରାଜାମାନେ ବିଦ୍ରୋହ କରିଥିବାର ଐତିହାସିକ ସୂଚନା ମଧ ଏ ଗ୍ରନ୍ଥରୁ ମିଳେ । ଗ୍ରନ୍ଥର ପ୍ରାୟ ଅଧ୍ୟାୟରୁ ଚାଲି ଆସିଥିବା ବହୁ ଗଡ଼ଜାତ ଏବଂ ପାର୍ବତ୍ୟ ଅଞ୍ଚଳର ଜମିଦାରମାନଙ୍କର ସହ ରାଜ ପ୍ରତିନିଧି ଜୟୀ ରାଜଗୁରୁଙ୍କ ଯୁଦ୍ଧ କରିବାର ବିବରଣୀ ରହିଛି । ଇତିହାସର ଏ ସମସ୍ତ ଘଟଣା ସହ 'ଫିରିଙ୍ଗି କଳି ଭାରତ' ବର୍ଣ୍ଣିତ ଘଟଣାର ବହୁଧା ସାମ୍ୟ ପରିଲକ୍ଷିତ ହୁଏ ।

ଗ୍ରନ୍ଥର ଚତୁର୍ଥ ଅଧ୍ୟାୟରେ ନାବାଳକ ରାଜା ମୁକୁନ୍ଦ ଦେବଙ୍କ ଅଭିଭାବକ, ପରାମର୍ଶଦାତା ତଥା ରାଜଗୁରୁ ଜୟକୃଷ୍ଣଙ୍କ ଯୁଦ୍ଧ ବର୍ଣ୍ଣନାର ସମ୍ୟକ୍ ସୂଚନା ଦିଆଯାଇପାରେ -

'ଏକଇ ବଇଷ୍ଣବ ଯେ ହୋଇଣ ଉନମତ୍ତ
ସଂଗ୍ରାମ ମଣ୍ଡଳେ ଯେ ଆରମ୍ଭିଲା ନୃତ୍ୟ ।' (୪/୨୧)

ପଞ୍ଚମ ଅଧ୍ୟାୟରେ ଜୟୀ ରାଜଗୁରୁଙ୍କ ପାଣ୍ଡିତ୍ୟ ସଂପର୍କରେ ମଧ ବିପ୍ରମୁନି ସଂକ୍ଷିପ୍ତ ଆଲୋଚନା କରିଛନ୍ତି -

'ଜୟ ରାଜଗୁରୁ ବସିଲେ ଶ୍ରୀଛାମୁରେ
ଅବଧାନେ ହୋଇ ଯେ ଅଛନ୍ତି ନୃପବରେ (୫/୩୯)
ଧର୍ମ ନ୍ୟାୟ ଶାସ୍ତ୍ର ଜାଣନ୍ତି ରାଜଗୁରୁ
ବେଦ ବିଦ୍ୟାରେ ଯେ ଅଟନ୍ତି ହନ୍ତକାରୁ ।' (୫/୪୩)

ଏହାର ଐତିହାସିକ ପ୍ରାମାଣିକତା ମଧ ରହିଛି ଯେ, ଗଦାଧର ପଦ୍ଧତିର ଲେଖକ ପଣ୍ଡିତ ଗଦାଧର ରାଜଗୁରୁଙ୍କ ପୌତ୍ର ତଥା ସାମନ୍ତ ହଳଧର ମହାପାତ୍ର, ଯିଏ କି ରାଜା ହରେକୃଷ୍ଣ ଦେବଙ୍କ ସମୟରେ ଶାରଦା ବାଜପେୟ ଯଜ୍ଞ କରି ତନ୍ତ୍ର ବଳରେ ସ୍ୱୟଂ ଶାରଦାଙ୍କୁ ଯଜ୍ଞ କ୍ଷେତ୍ରରେ ଆବିର୍ଭୂତା କରାଇଥିଲେ । ତାଙ୍କରି ପ୍ରପୌତ୍ର ଭାବେ ବିଭିନ୍ନ ଶାସ୍ତ୍ର ବିଦ୍ୟା, ତନ୍ତ୍ର ବିଦ୍ୟାଠାରୁ ଶସ୍ତ୍ର ବିଦ୍ୟାଯାଏଁ ସବୁ କିଛିକୁ ଆୟତ୍ତ କରିଥିଲେ ଜୟୀ ରାଜଗୁରୁ ।

ଏତଦ୍‌ଭିନ୍ନ କବିଡିଣ୍ଡିମ ଜୀବ ଦେବାଚାର୍ଯ୍ୟ କୃତ 'ଭକ୍ତି ଭାଗବତ' କାବ୍ୟରୁ ଜଣାଯାଏ, ଜୟୀ ରାଜଗୁରୁଙ୍କ ପୂର୍ବ ପୁରୁଷଗଣ ସୋମବଂଶୀ, ଗଙ୍ଗବଂଶୀ ଓ ସୂର୍ଯ୍ୟ ବଂଶୀୟ ରାଜାମାନଙ୍କର ପୁରୁଷାନୁକ୍ରମେ ରାଜଗୁରୁ ପଦବୀରେ ରହି ଆସିଥିଲେ ।[୬]

ଗ୍ରନ୍ଥର ଷଷ୍ଠ ଅଧ୍ୟାୟରେ, ରାଜସଭାରେ ରାଜା ତାଙ୍କର ଅଷ୍ଟମ ଅଙ୍କରେ ଅର୍ଥାତ୍ ୧୮୦୩ ମସିହାରେ ଦେଇଥିବା ସ୍ୱୀକାରୋକ୍ତି ହିଁ ରାଜ୍ୟର ପ୍ରକୃତ ଚିତ୍ର ଓ ଅବସ୍ଥା ।[୭] ରାଜା ଏ ସମୟକୁ ମରହଟ୍ଟାଙ୍କଠାରେ ଚାରିଗୋଟି ମୁଖ୍ୟ ପ୍ରଗଣା ବନ୍ଧକ ଦେଇ (ଲେମ୍ବେଇ, ରାହାଙ୍ଗ, ସିରେଇ, ଚବୀଶକୁଦ) ପ୍ରଚୁର ରାଜସ୍ୱ ହରାଉଥିଲେ । ତା' ସହ କିଛି ସାମନ୍ତରାଜାମାନଙ୍କ ସହ ଯୁଦ୍ଧ ଦ୍ୱାରା ଆର୍ଥିକ ଦୁର୍ଗତି ଭିତରକୁ ଟାଣି ହୋଇ ଯାଇଥିଲେ । ପୁନଶ୍ଚ ଶିବ ପାର୍ବତୀଙ୍କ କଥୋପକଥନ ଶୈଳୀରେ ବିପ୍ରମୁନି ଖୋର୍ଦ୍ଧା ରାଜ୍ୟର ଡେଲାଙ୍ଗ, କଣାସଠାରୁ ବାଙ୍କିଯାଏ ପରିବ୍ୟାପ୍ତ ହୋଇ ରହିଥିବା ଦୁର୍ଦ୍ଦଶା ସାଙ୍ଗକୁ ମରହଟ୍ଟା-ବର୍ଗୀଙ୍କ ପରାଜୟ ଓ ପଳାୟନ ଏବଂ ଇଂରେଜମାନଙ୍କ ଆଗମନ ଘଟି ରାଜାଙ୍କୁ ତାଙ୍କ ନ'ଙ୍କରେ ବହୁ ସଂଗ୍ରାମ ଓ ଝଡ଼ ମଧରେ ଗତି କରିବାକୁ ପଡ଼ିବ ବୋଲି ଯେଉଁ ଭବିଷ୍ୟବାଣୀ କରିଛନ୍ତି ତାହା ତତ୍କାଳୀନ ଖୋର୍ଦ୍ଧାର ବାସ୍ତବ ଚିତ୍ର ବ୍ୟତିରକେ ଅନ୍ୟକିଛି ନୁହେଁ ।

ମୁକୁନ୍ଦ ଦେବଙ୍କ ରାଜତ୍ୱ କାଳରେ ହିଁ (୧୭୬୬-୧୮୦୨) କଲିକତାସ୍ଥ କମ୍ପାନୀ ସରକାର ମରହଟ୍ଟା ଅଧିକୃତ ଓଡ଼ିଶା ଅଧିକାର କରିବା ପାଇଁ ବହୁ କୂଟନୈତିକ ଉଦ୍ୟମ କରି ବିଫଳ ହେବା ପରେ ୧୮୦୨ ମସିହାରେ ଲେଫ୍‌ଟନାଣ୍ଟ କର୍ଣ୍ଣେଲ କ୍ୟାମ୍ପବେଲ୍ ଗଞ୍ଜାମ ଆଡୁ ଆକ୍ରମଣ ପାଇଁ ଅଗ୍ରସର ହେଲେ । ଏହି ସମୟରେ କ୍ୟାମ୍ପବେଲ୍ ଗୁରୁତର ଭାବେ ଅସୁସ୍ଥ ହୋଇ ପଡ଼ିବାରୁ ତାଙ୍କ ସେକ୍ରେଟାରୀ କର୍ଣ୍ଣେଲ ହାରକୋଟ ୧୮୦୩ ମସିହା ମାର୍ଚ୍ଚ ୧୧ ତାରିଖ ଦିନ ଗଞ୍ଜାମ ସେନାପତି ଭାବେ ଯୋଗ ଦେଲେ । ସେହି ବର୍ଷ ସେପ୍ଟେମ୍ବର ୧୪ ତାରିଖରେ ବାରବାଟୀ ଦୁର୍ଗ ଅଧିକାର ଉଦ୍ଦେଶ୍ୟରେ ଚିଲିକାର ମାଣିକ ପାଟଣା ବାଟ ଦେଇ ପୁରୀ ଆଗମନ କଲେ ଏବଂ ୧୮୦୩ ମସିହା ଅକ୍ଟୋବର ୧୪ ତାରିଖରେ ବାରବାଟୀ ଦୁର୍ଗ ଅଧିକାର କଲେ ।

'ଫିରିଙ୍ଗି କଳି ଭାରତ'ରେ ବର୍ଣ୍ଣିତ ରାଜା ମୁକୁନ୍ଦ ଦେବଙ୍କ ଅଷ୍ଟମ ଓ ନବମ ଅଙ୍କ ହେଉଛି ୧୮୦୩ ଏବଂ ୧୮୦୪ ମସିହା । ବସ୍ତୁତଃ ଏହି ଦୁଇ ବର୍ଷ ମଧରେ ହିଁ ଦକ୍ଷିଣରୁ ଗଞ୍ଜାମ ଆଡୁ ଏବଂ ଉତ୍ତରରୁ ବାଲେଶ୍ୱର ଆଡୁ ଇଂରେଜମାନେ ଆସିଛନ୍ତି ଓ ଖୋର୍ଦ୍ଧା ରାଜ୍ୟ ଉପରେ ବିପତ୍ତି ପରେ ବିପତ୍ତି ପଡ଼ି ଇଂରେଜ ଅଧିକାରକୁ ଏ ରାଜ୍ୟ ଚାଲିଯାଇଛି ।

ଗ୍ରନ୍ଥର ଅଷ୍ଟମ ଅଧ୍ୟାୟରେ ଇଂରେଜଙ୍କ ସହ ଯୁଦ୍ଧ କରି ଯେଉଁମାନେ ପରାସ୍ତ ହୋଇଥିଲେ, ସେ ବିବରଣୀ ମଧ ଇତିହାସ ସମର୍ଥିତ । ସେମାନେ ହେଲେ, ପେଶୱା, ସିନ୍ଧୁଆ (ସିନ୍ଧିଆ), ହୁଲୁକର (ହୋଲ୍‌କାର), ନିଜାମ, ରଘୁଜୀ ଏବଂ ଦଉଲତ ରାଏ (ରାମ), ଏପରିକି ପେଶୱାଙ୍କ ସହ ଇଂରେଜଙ୍କ ଏ ସମୟର ସନ୍ଧିକଥାକୁ ବିପ୍ର ମୁନୀ ଉଲ୍ଲେଖ କରି କହିଛନ୍ତି -

'ବୋଇଲେ ସେ ପୃଥ୍ୱୀ ଲେଖି ଆମ୍ଭେ ଦେବା,
ସାହେବଙ୍କ ସଙ୍ଗେ କଳି ନକରିବା ବାବା ।' (୮/୭୦)

ପୁନଶ୍ଚ ହୋଲ୍‌କାର ତଥା ଅନ୍ୟମାନଙ୍କ ସହ ଯେଉଁ ଇଂରେଜମାନେ ଯୁଦ୍ଧ କରିଥିଲେ ତାହା ମଧ୍ୟ କାଳ୍ପନିକ ନୁହଁ ଓ ସଂପୂର୍ଣ୍ଣ ଐତିହାସିକ ଚରିତ୍ର । ସେମାନେ ହେଲେ - ମିଲିମିଲି (ମ୍ୟାଲ୍‌ଭେଲି), ଫ୍ଳୁଚରି (ମେଜର ଫ୍ଲେଚର), ଜନଲ ହରକଟ (କର୍ଣ୍ଣେଲ ହାରକୋଟ)[୮] ଇତ୍ୟାଦି । ଏମାନେ ବାରବାଟୀ ଦୁର୍ଗ ଅଧିକାର ପରେ ମଧ୍ୟ ମନରେ ଶଙ୍କା ରଖିଛନ୍ତି ଖୋର୍ଦ୍ଧାରାଜା ଓ ବର୍ଗୀଙ୍କ ମଧ୍ୟରେ ମେଳି ଇଂରେଜମାନଙ୍କ ବିପଦର କାରଣ ହୋଇପାରେ ବୋଲି । କବିଙ୍କ ଉକ୍ତିରେ -

'ଜଗନ୍ନାଥ କିଲ୍ଲା ଯେ ବିଚାରି କାର୍ଯ୍ୟ କର
ଚାରିଲକ୍ଷ ଟଙ୍କା ଉତ୍ସର୍ଗେ ତତ୍‌ପର ।
ଟଙ୍କା ଲାଞ୍ଚ ଦେଇ ନୃପେ କର ଭୋଳ
ବରଗୀ ନୃପତି ଯେହ୍ନେ ନୋହିଁବେ ମେଳ ।'

ଅବଶ୍ୟ ଏ ଶଙ୍କା ଅମୂଳକ ନଥିଲା । ଇତିହାସରୁ ଜଣାଯାଏ ଯେ, ଇଂରେଜମାନଙ୍କ ଦ୍ୱାରା ପ୍ରବଞ୍ଚନାର ଶୀକାର ହେବା ପରେ, ମରହଟ୍ଟାଙ୍କ ସହ ମିଳିତ ହୋଇ କମ୍ପାନୀ ବିରୁଦ୍ଧରେ ଯୁଦ୍ଧ ପାଇଁ ନିଜକୁ ପ୍ରସ୍ତୁତ କରି ଜୟୀ ରାଜଗୁରୁ ନାଗପୁରକୁ ଦୂତ ପ୍ରେରଣ କରିଥିଲେ । ଦୁର୍ଭାଗ୍ୟ ବଶତଃ ଦୂତ ଇଂରେଜମାନଙ୍କ ହାତରେ ଧରାପଡ଼ିଯିବାରୁ ରାଜଗୁରୁଙ୍କ ପ୍ରଚେଷ୍ଟା ପଣ୍ଡ ହେବା ସହ ସେ ଇଂରେଜଙ୍କ ଚକ୍ଷୁଶୂଳ ହୋଇଥିଲେ ।

ଇଂରେଜଙ୍କ ପ୍ରବଞ୍ଚନା ହେଉଛି - ଦାକ୍ଷିଣାତ୍ୟରୁ ଗଞ୍ଜାମ ଓ ଉତ୍ତରରୁ ବାରବାଟୀ ଦଖଲ ପରେ, ଉଭୟ ସ୍ଥାନ ମଧ୍ୟରେ ସୈନ୍ୟଚାଳନା ପାଇଁ ତଥା ଖବର ସରବରାହ ପାଇଁ ଏକମାତ୍ର ପଥ ଥିଲା ଖୋର୍ଦ୍ଧା ରାଜ୍ୟ ଦେଇଯିବା । ଯାହାକି ବଳପୂର୍ବକ ଦଖଲ କରିବା ଅପେକ୍ଷା ଛଳ ପୂର୍ବକ ଦଖଲ କରିବା ପାଇଁ ଇଂରେଜମାନେ ପ୍ରଥମରୁ ପ୍ରଲୋଭନ ଦେଖାଇଥିଲେ । ଏହି ଇତିହାସ ସମ୍ମତ ସନ୍ଧି ପ୍ରସ୍ତାବ ଅନୁସାରେ ମୁକୁନ୍ଦ ଦେବଙ୍କ ଏଇ ସହାୟତା ପ୍ରଦାନ ପରେ, ଇଂରେଜମାନେ ମରହଟ୍ଟାଙ୍କଠାରୁ ଓଡ଼ିଶା ଶାସନ କ୍ଷମତା ଛଡ଼ାଇ ଆଣି ଖୋର୍ଦ୍ଧାକୁ ମରହଟ୍ଟା ଦଖଲରେ ଥିବା ଚାରିମୁଖ୍ୟ ପ୍ରଗଣା ଫେରସ୍ତ ଦେବେ । ତତ୍‌ସହିତ ଏକ ଲକ୍ଷ ଟଙ୍କା ମଧ୍ୟ ଦେବେ । ଏ ସଂପର୍କିତ ସୂଚନା[୯] ମଧ୍ୟ ଫିରିଙ୍ଗି କଳି ଭାରତର ଐତିହାସିକତ୍ୱକୁ ଦୃଢ଼ କରେ ।[୧୦]

ଏହି ଚୁକ୍ତିରେ ସ୍ୱାକ୍ଷର କଲେ ରାଜାଙ୍କର ସମସ୍ତ କ୍ଷମତା ଲୋପ ପାଇବାର ସମ୍ଭାବ୍ୟ ଆଶଙ୍କା ହେତୁ ରାଜାଙ୍କ ପରାମର୍ଶଦାତା ଭାବରେ ଜୟୀ ରାଜଗୁରୁ ଏ ପ୍ରସ୍ତାବକୁ ବିରୋଧ ମଧ୍ୟ କରିଥିଲେ । ରାଜଗୁରୁଙ୍କ ବିରୋଧ ସତ୍ତ୍ୱେ ଚୁକ୍ତି ସମାପନ ହୋଇଥିଲା, କିନ୍ତୁ ଇଂରେଜମାନେ ତାଙ୍କର ପ୍ରତିଜ୍ଞା ରକ୍ଷା ନକରି, ଓଲଟା ରାଜାଙ୍କୁ ତାଙ୍କ ଅଧୀନତା ସ୍ୱୀକାର ପାଇଁ ପ୍ରସ୍ତାବ ଦେଇ, ଜୟୀ ରାଜଗୁରୁଙ୍କୁ ପରାମର୍ଶଦାତା ପଦରୁ ବହିଷ୍କାର ପାଇଁ ନିର୍ଦ୍ଦେଶ ଦେଇଥିଲେ । ସେହି ଅନୁସାରେ ୧୮୦୩ ଡିସେମ୍ବର ୧୬ ତାରିଖରେ ଗୋବିନ୍ଦ ରାୟ ମେହେର ନାମକ ଜଣେ କାନୁନ୍‌ଗୋ ହାତରେ ପତ୍ର ଲେଖି କର୍ଣ୍ଣେଲ ହାରକୋଟ ରାଜାଙ୍କ ପାଖକୁ ପଠାଇଥିଲେ । ଏହା ପ୍ରତ୍ୟାଖ୍ୟାତ ହେବା ପରେ ପୁନର୍ବାର ଇଂରେଜଙ୍କ ସ୍ୱତନ୍ତ୍ର ଦୂତ ୧୮୦୪ ଫେବୃଆରୀ ୨୦ ତାରିଖରେ ରାଜାଙ୍କ ପରାମର୍ଶଦାତା ଜୟୀ ରାଜଗୁରୁ କର୍ଣ୍ଣେଲ ହାରକୋଟଙ୍କୁ ଦେଖା କରିବା ପାଇଁ ନିର୍ଦ୍ଦେଶ ପତ୍ର ନେଇ ଆସିଲା । ରାଜଗୁରୁ ଏହାପ୍ରତି ଗୁରୁତ୍ୱ ନଦେଇ ସର୍ତ୍ତ ମୁତାବକ ଇଂରେଜମାନଙ୍କଠାରୁ ଏକ ଲକ୍ଷ ଟଙ୍କା ଓ ଲେମ୍ବେଇ, ରାହାଙ୍ଗ, ସିରେଇ ଓ ଚବିଶକୁଦ ପ୍ରଗଣାମାନ ଫେରସ୍ତ ଦାବୀରେ ୧୮୦୪ ମାର୍ଚ୍ଚ ୧୧ ତାରିଖ ବାରବାଟୀ ଦୁର୍ଗ ଘେରାଉ କଲେ । ହାରକୋଟ ଏହି ଆକସ୍ମିକ ଘେରାଉରେ ଭୟଭୀତ ହୋଇ ନଗଦ ୪୦,୦୦୦ ଟଙ୍କା ପ୍ରଦାନ କରିଥିଲେ । ଏହି ଟଙ୍କା ଗ୍ରହଣ କରି ଜୟୀ ରାଜଗୁରୁ ରାଜାଙ୍କ ବିଳାସରେ ତାହା ବ୍ୟୟ ନକରି ରାଜ୍ୟର ଅର୍ଥନୀତିର ଦୃଢ଼ୀକରଣ ତଥା ସୈନ୍ୟମାନଙ୍କ ଯୁଦ୍ଧ ପ୍ରସ୍ତୁତିରେ ତାହା ବ୍ୟୟ କରିଥିଲେ । ଯାହାଫଳରେ ସାମୟିକ ଭାବରେ ଲାଞ୍ଚୁଆ ଆଖ୍ୟା ମଧ୍ୟ ତାଙ୍କୁ ମିଳିଥିଲା । ଏ ସଂପର୍କରେ ବିଶଦ ବିବରଣୀ ମଧ୍ୟ 'ଫିରିଙ୍ଗି କଳି ଭାରତ'ରୁ ଜଣାଯାଏ ।

ଗ୍ରନ୍ଥର ଅଷ୍ଟମ ଅଧ୍ୟାୟ ୩୨୫ ପଦରେ ଜୟୀ ରାଜଗୁରୁ ଲାଞ୍ଚ ଖାଇ[୧୧] ନୀରବରେ ଫେରି ଆସିଥିବା କଥା ଯାହା ଉଲ୍ଲେଖ କରିଛନ୍ତି ତାହା ସତ୍ୟର ଅପଳାପ ପରି ମନେହୁଏ । କାରଣ ଠିକ୍ ଚାରିପଦ ପୂର୍ବରୁ ବାଟ ଜମିଦାର (ଫତେ ମହମ୍ମଦ)କୁ ବିଶ୍ୱାସ ନକରି ଜୟୀ ରାଜଗୁରୁ, କୁଅଁର ବାଲାଜୀ ଏବଂ ସୁକଦେବ (ମରହଟ୍ଟା)ଙ୍କ ସହାୟତାରେ[୧୨] ଇଂରେଜମାନଙ୍କ ସହ ଲଢ଼ିବାକୁ ପ୍ରସ୍ତୁତ ହେବାବେଳେ ସେମାନଙ୍କ ପଛଘୁଞ୍ଚା ଓ ଜୟୀଙ୍କ ବୀରତ୍ୱ କଥା ସୂଚିତ କରିଛନ୍ତି । ଏହା ହିଁ ଜୟୀ ରାଜଗୁରୁ ଲାଞ୍ଚ ନଖାଇ ଦେଶ ପାଇଁ ଯୁଦ୍ଧ କରିବାର ସୂଚନା ମିଳୁଛି । ପୁନଶ୍ଚ ସେଇ ଅଧ୍ୟାୟର ୪୦୨ ପଦରେ ରାଜାଙ୍କ ବିଶ୍ୱସ୍ତ ବ୍ୟକ୍ତି ଭାବରେ ରାଜଗୁରୁ ପ୍ରେରିତ ହେବାର ସୂଚନା[୧୩] ଦେଇ ନିଜ କଥାକୁ ବିପ୍ର ମଧୁସୂଦନ ଖଣ୍ଡନ କରିଛନ୍ତି ।

ଅବଶ୍ୟ ଏହା ପଛରେ ଆଉ ଏକ କାରଣ ଥାଇପାରେ ଯେ, ଇଂରେଜମାନଙ୍କଠାରୁ ଖୋର୍ଦ୍ଧା ରାଜ୍ୟକୁ ସୁରକ୍ଷିତ ରଖିବା ପାଇଁ ଭୋନ୍‌ସଲାଙ୍କ ସହ ଜୟୀ ରାଜଗୁରୁଙ୍କ ଗୁପ୍ତ ସାକ୍ଷାତକୁ ଭେଦୁଆମାନଙ୍କ ଦ୍ୱାରା ଇଂରେଜମାନେ ଜାଣି ପାରିଥିଲେ । ହୁଏତ ଇଂରେଜମାନଙ୍କ ସହ ହୋଇଥିବା ଚୁକ୍ତିକୁ ବିରୁଦ୍ଧାଚରଣ କରି ଜୟୀ ରାଜଗୁରୁ ତଥା ରାଜାଙ୍କ ଶତ୍ରୁ ସ୍ଥାନୀୟ କେହି ଏହା ପ୍ରଚାର କରିଥିବେ ଓ ସେଇକଥା ଗ୍ରନ୍ଥକାର ଉଲ୍ଲେଖ କରିଛନ୍ତି ।

ଜୟୀ ରାଜଗୁରୁ ଯେ ଲାଞ୍ଚୁଆ ନଥିଲେ ଓ ସର୍ବଶ୍ରେଷ୍ଠ ଦେଶଭକ୍ତ ଥିଲେ, ତାହା ସେଇ ଅଧ୍ୟାୟରୁ ହିଁ ଅଧିକ ସ୍ପଷ୍ଟ ଭାବରେ ଜାଣିହୁଏ । ୮/୧୬୫ ପଦ ଅନୁସାରେ ମରହଟ୍ଟା ଏବଂ ମୁକୁନ୍ଦ ଦେବଙ୍କ ମିଳିତ ଶକ୍ତିକୁ ଜେନେରାଲ ମ୍ୟାଲ୍‌ଭେଲି ଭୟ କରୁଥିଲେ ଏବଂ କିଛି ଭେଜୁଆ

ବିଶ୍ୱାସଘାତକଙ୍କ ସହାୟତାରେ ଏ ଯୋଜନା ପଣ୍ଡ କରିବା ସହିତ ଜୟୀ ରାଜଗୁରୁଙ୍କୁ ମିଥ୍ୟା ବଦନାମ ଦ୍ୱାରା ଅପ୍ରିୟ କରିବା ପାଇଁ ଚାହିଁଥିଲେ ।

ମୁକୁନ୍ଦ ଦେବଙ୍କ ନବମ ଅଙ୍କର ଶେଷ ପର୍ଯ୍ୟାୟରେ କଟକର ଲାଲବାଗଠାରେ ମିଲିମିଲି (ମ୍ୟାଲ୍‌ଭେଲି) ସାହେବଙ୍କଠାରେ ରାଜଗୁରୁଙ୍କର ଚୁକ୍ତିର ସର୍ତ୍ତ ଅନୁସାରେ ଚାରିପ୍ରଗଣା ଫେରସ୍ତ ଓ ଚୁକ୍ତିନାମାର ଦ୍ୱିତୀୟ ଅର୍ଦ୍ଧକ (ପଚାଶ ହଜାର ଟଙ୍କା) ଟଙ୍କାର ଦାବୀ ବିଫଳ ହୋଇଥିଲା । ଯାହା ଇତିହାସ ସମ୍ମତ । ଏ ସଂପର୍କରେ ଫିରିଙ୍ଗି କଳି ଭାରତରେ ଉଲ୍ଲେଖ ଅଛି -

'ଚାରିପରଗଣା ଆମ୍ଭେ ଅବଶ୍ୟ ପାଇବୁ,
ଭଲେ ନଛାଡ଼ିଲେ ନିଶ୍ଚେ ସମରରେ ନେବୁ ।
ଶୁଣିସବୁ ସାହେବ ହୋଇଲେ ଠରାଠରି,
ଦ୍ୱିତୀୟ ମରହଟ୍ଟା ଇଏ ଆମ୍ଭର ବଇରି । (୯/୧୦, ୧୧)

ପ୍ରଥମତଃ ଏହା ଜୟୀ ରାଜଗୁରୁଙ୍କ ନିଃସ୍ୱାର୍ଥପରତା ପ୍ରମାଣ କରିବା ସହ, ଦେଶଭକ୍ତି ଓ ବୀରତ୍ୱର ସୂଚନା ମିଳୁଛି । ଇତିହାସ ଅନୁସାରେ ଏ ଘଟଣା ଘଟିଥିଲା ୧୮୦୪ ମସିହା ସେପ୍ଟେମ୍ବର ମାସରେ । ଯାହାର କାଳ ନିର୍ଣ୍ଣୟ 'ଫିରିଙ୍ଗି କଳି ଭାରତ' ସହ ସମାନ ।[୧୪] ଗ୍ରନ୍ଥାନୁସାରେ ମୁକୁନ୍ଦ ଦେବଙ୍କ ନ'ଙ୍କ ଶେଷ ଏବଂ ଦଶମ ଅଙ୍କର ଆରମ୍ଭରେ ଏହା ଘଟିଛି । ୧୮୦୪ ମସିହା ସେପ୍ଟେମ୍ବର ଦ୍ୱିତୀୟ ସପ୍ତାହ ହେଉଛି ରାଜାଙ୍କ ନ'ଙ୍କ ଶେଷ ଓ ୧୦ମ ଅଙ୍କର ଆରମ୍ଭ ।

ଜୟୀ ରାଜଗୁରୁଙ୍କ ଉପରୋକ୍ତ ଔଦ୍ଧତ୍ୟକୁ ଇଂରେଜମାନେ ସହ୍ୟ କରିପାରିନାହାନ୍ତି । ଫଳରେ ତାଙ୍କୁ ଏକତରଫା ଭାବରେ ପରାମର୍ଶଦାତା ପଦରୁ ହଟାଇ ୧୮୦୪ ଅକ୍ଟୋବର ୧ ତାରିଖରେ ଗୋଲାମ୍ ଅମିନ୍ ନାମକ ଜଣେ ଇଂରେଜ କର୍ମଚାରୀଙ୍କୁ ରାଜାଙ୍କ ଉପଦେଷ୍ଟା ଭାବରେ ନିଯୁକ୍ତି ଦେଲେ । ଏଥିରେ ରାଜା ଆତଙ୍କିତ ହୋଇ ପଡ଼ିଥିବାବେଳେ ରାଜଗୁରୁ ବିବ୍ରତ ନହେବାପାଇଁ ସାନ୍ତ୍ୱନା ଦେଇଥିଲେ -

'ଶୁଣି ଜୟ ମୁନି ଦେଲେକି ଉତ୍ତର
ଏଥିରେ ଶଙ୍କା ତୁମେ ନକର ନୃପବର ।'

ଏହି ଇତିହାସ ଘୋଷିତ ସତ୍ୟଟି ଫିରିଙ୍ଗି କଳି ଭାରତର ନବମ ଅଧ୍ୟାୟ ୨୧ରୁ ୨୫ ପଦ ମଧ୍ୟରେ କବି ଉଲ୍ଲେଖ କରିଛନ୍ତି ।

ଇଂରେଜମାନଙ୍କଠାରୁ ନିରାଶ ହୋଇ ଫେରିଥିବା ଜୟୀ ରାଜଗୁରୁ ବିଦ୍ରୋହର ପ୍ରଥମ ପଦକ୍ଷେପ ସ୍ୱରୂପ, ଇଂରେଜମାନେ ମରହଟ୍ଟାଙ୍କଠାରୁ ଦଖଲ କରିଥିବା[୧୫] ଅଠର ଗଡ଼ର ରାଜାମାନଙ୍କୁ ଖଜଣା ଦେବାପାଇଁ ଏକ ହୁକୁମ୍‌ନାମା ଜାରି କରିଦେଲେ ।[୧୫] ଏ ଖବରରେ ଇଂରେଜଙ୍କ କ୍ରୋଧ ବଢ଼ିବା ସ୍ୱାଭାବିକ (କ୍ରୋଧରେ କର୍ଣ୍ଣେଲ ଉଠିଲା - ଶିରଝୁଣି । ୯/୩୬) ।

ଇତିହାସ କହେ ଏହା ପରେ ପରେ ୧୮୦୪ ନଭେମ୍ବର ୨୨ ତାରିଖ ଦିନ ଖୋର୍ଦ୍ଧା ଆକ୍ରମଣ ପାଇଁ ଇଂରେଜମାନେ ପିପିଲି, ଡେଲାଙ୍ଗ ଦେଇ ଆଗେଇ ଆସିଥିଲେ । ଏ ଗ୍ରନ୍ଥରେ ଉଲ୍ଲେଖ ଅଛି (୯/୪୦, ୪୧) ରାଜାଙ୍କର ଦଶମ ଅଙ୍କ ବିଛାମାସ କୃଷ୍ଣପକ୍ଷ ଦ୍ୱିତୀୟା ଦିନ ରାଜଗୁରୁଙ୍କ ନେତୃତ୍ୱରେ ଖୋର୍ଦ୍ଧା ସୈନ୍ୟ, ଇଂରେଜଙ୍କୁ ଡେଲାଙ୍ଗଠାରୁ ଘଉଡାଇ ଦେଇଥିଲେ । ହିସାବରେ ତାହା ୧୮୦୪ ଡିସେମ୍ବର ପ୍ରଥମ ସପ୍ତାହରେ ପଡୁଛି ।

ଏହି ଯୁଦ୍ଧ ପରେ ୧୮୦୪ ଡିସେମ୍ବର ୬ ତାରିଖରେ ଇଂରେଜ ସରକାର ରାଜାଙ୍କୁ ବିଦ୍ରୋହୀ ଘୋଷଣା କରି ସମସ୍ତ ନାଟର ଗୋବର୍ଦ୍ଧନ ଜୟୀ ରାଜଗୁରୁଙ୍କୁ ଛଳେ, ବଳେ, କୌଶଳେ ବନ୍ଦୀ କରିବା ପାଇଁ ସ୍ଥିର କରିଥିଲେ । ଏ ବିଷୟରେ ବିପ୍ର ମଧୁସୂଦନ ଉଲ୍ଲେଖ କରି କହିଛନ୍ତି - 'ହାଣ୍ଟୋର (ହାଣ୍ଟର), କପିତାନ (କ୍ୟାପ୍‌ଟେନ୍), ଗର୍ଣ୍ଣେଲ (କର୍ଣ୍ଣେଲ ହାରକୋଟ), ମହେଜର (ମେଜର ଫ୍ଲେଚର) / ଏ ଚାରି ସାହେବ ସୈନ୍ୟ ସାଜିଲେ ଅପାର ।' (୯/୮୬)

ରାଜାଙ୍କର ପ୍ରିୟପାତ୍ର ଥିବା ବାସୁଦେବ ଭ୍ରମରବରଙ୍କ ପୁତ୍ର ରାମଚନ୍ଦ୍ର ଭ୍ରମରବର ଭେଦୁଆ ସାଜି (୯/୧୨୫) ଜୟୀ ରାଜଗୁରୁଙ୍କ ପ୍ରତି ଅସୂୟା ପରବଶ ହୋଇ, ରାଜାଙ୍କ କିଛି ଦୋଷ ନଥିବା କହି, ସମସ୍ତ ଦୋଷ ରାଜାଙ୍କ ଉପରେ ଲଦି ଦେଇଛି ।[୧୬] ନବମ ଅଧ୍ୟାୟର ୧୨୯ଠାରୁ ୧୩୧ ପଦ ମଧ୍ୟରେ ଜୟୀଙ୍କ ବିରୁଦ୍ଧରେ ବକ୍ତବ୍ୟ ପ୍ରଦାନ କରି ଖୋର୍ଦ୍ଧାଗଡ଼ ଅଧିକାରର ପଥ ବତାଇ ଦେଇଛି ।[୧୭]

'ଫିରିଙ୍ଗି କଳି ଭାରତ' ଅନୁସାରେ ମୁକ୍ତି ସଂଗ୍ରାମର ମୁଖ୍ୟ ପୁରୋଧା ଥିଲେ ଜୟୀ ରାଜଗୁରୁ । ସେ ବୁଝି ସାରିଥିଲେ ଏ ଯୁଦ୍ଧରେ ତାଙ୍କ ପରାଜୟର ମୁଖ୍ୟ କାରଣ ହେବ ତାଙ୍କ ପ୍ରତି ଦେଶୀୟ ରାଜାମାନଙ୍କର ବିଶ୍ୱାସଘାତକତା ।[୧୮]

୧୮୦୪ ଡିସେମ୍ବର ୪ ତାରିଖରେ ଗଡ଼ ଇଂରେଜଙ୍କ ହାତକୁ ଚାଲିଗଲା ପରେ, ଜୟୀ ରାଜଗୁରୁଙ୍କୁ ଆତ୍ମଗୋପନ କରି ପଳାୟନ ପାଇଁ ରାଜା ଉପଦେଶ ଦେଇଥିଲେ । ଯଦିଓ ରାଜା ନିଜେ ମଧ ଲୁଚି ରହିଥିଲେ ତଥାପି ରାଜାଙ୍କ ଉକ୍ତି ସୂଚିତ କରେ ଯେ, ଇଂରେଜମାନଙ୍କ ପ୍ରଧାନ ଶତ୍ରୁ ରାଜା ନୁହନ୍ତି - ଜୟୀ ରାଜଗୁରୁ । ତେଣୁ ରାଜା କହିଥିଲେ - ଯହିଁ ତହିଁ ପଶି ରଖ ତୁମ ପ୍ରାଣ / ଦାନବର ଘୋଷା ତୁମ୍ଭ ଉପରେ ବଡ଼ଟାଣ (୧୦/୨୧) ।

ଜୟୀ ରାଜଗୁରୁଙ୍କ ବୀରତ୍ୱର ଆଉ ଏକ ଐତିହାସିକ ନିଦର୍ଶନ ଏ ଗ୍ରନ୍ଥରୁ ମିଳେ । ଆତ୍ମ ଗୋପନକାରୀ ରାଜାଙ୍କର ସନ୍ଧି ପ୍ରସ୍ତାବ ନେଇ ପିଣ୍ଡିକି ହରିଚନ୍ଦନ ଯିବାକ୍ଷଣି ଫ୍ଲେଚର କହିଥିଲେ -

'ଲକ୍ଷେ ଟଙ୍କା ଦେଲୁ ଭକ୍ତିଭାବ କଲୁ,
କ୍ଷତ୍ରତାତି ରାଜା ଜଗନ୍ନାଥ ପ୍ରାୟେ ମଣିଥିଲୁ ।' (୧୦/୩୫)

କିନ୍ତୁ ବ୍ରାହ୍ମଣ ବୁଦ୍ଧିରେ (ରାଜଗୁରୁ) ଏତେ ସବୁ କାର୍ଯ୍ୟ କରିଥିବାରୁ - ବେଗେ ଭେଟାଅ ତୁମ୍ଭ ରାଜଗୁରୁ ଗୋସାଇଁ (୧୦/୪୧) । ରାଜଗୁରୁଙ୍କୁ ଆଣି ଦେଲେ ହିଁ ସନ୍ଧିକଥା ଆଗେଇପାରେ ବୋଲି ଗ୍ରନ୍ଥର ଉଲ୍ଲିଖିତ ଅଂଶରୁ ବୁଝିହୁଏ ।[୧୯] ଇଂରେଜମାନଙ୍କ କ୍ରୋଧର କେନ୍ଦ୍ରୀୟ ବ୍ୟକ୍ତି ଜୟୀ ରାଜଗୁରୁ କେତେ ପରିମାଣର ସ୍ୱାଧୀନଚେତା ଓ ଦେଶଭକ୍ତ ଥିଲେ ତାହା ସ୍ପଷ୍ଟ ହୁଏ ।

'ଫିରିଙ୍ଗି କଳି ଭାରତ'ର ଦଶମ ଅଧ୍ୟାୟର ୬୮ ପଦଠାରୁ ୭୩ ପଦ ମଧ୍ୟରେ ଜୟୀ ରାଜଗୁରୁ ବନ୍ଦୀ ହେବାର ସୂଚନା ସହ ଇଂରେଜ ଅଧିକାରୀଙ୍କ ଖୁସିର ଚିତ୍ର କବି ପ୍ରଦାନ କରିଛନ୍ତି । ରାଜଗୁରୁଙ୍କ ପ୍ରତି ଇଂରେଜଙ୍କ କ୍ରୋଧର ଗୋଟିଏ ନମୁନା ଏଠାରେ ଦିଆଯାଇପାରେ -

'ଦେଖି ଅସୁରେଶ୍ୱର କ୍ରୋଧେ ଉଗ୍ରଦୃଷ୍ଟି
ଦାନ୍ତେ ଦାନ୍ତ ଚାପି କୁରୁଛି ପରୁ ଉଠି ।'

ପୁନଶ୍ଚ ଫ୍ଲେଚର ଜୟୀ ରାଜଗୁରୁଙ୍କୁ ଆକ୍ଷେପ କରି କହିଛି -

'ତୁ ପରା ମରହଟ୍ଟା ରଖାଇଲୁ ଶରଣ
ତୁ ପରା କଟକକୁ ଯାଇଥିଲୁ ପୁଣ ।
ଜମିଦାରମାନଙ୍କୁ କରାଇଥିଲୁ ମେଳି
ଟିକା ଟଙ୍କା ଅସୁଲ କରୁ ପ୍ରଜାଙ୍କ ଦଳି ।
(୧୦/୯୫)
ଗର୍ବେଶ୍ୱର ରାଜା ନ ଜାଣଇ କିଛି
ରାଜ୍ୟର ଭାରା ତୋ ଶିରରେ ଦେଇଅଛି ।
(୧୦/୧୦୦)

ଖୋର୍ଦ୍ଧାର ପତନ ଏବଂ ଜୟୀ ରାଜଗୁରୁ ବନ୍ଦୀ ହେବା ପରେ ୧୮୦୫ ଜାନୁଆରୀ ୩ ତାରିଖରେ ସବୁଦିଗରୁ ଅସହାୟ ମୁକୁନ୍ଦ ଦେବ ଇଂରେଜଙ୍କଠାରେ ଆତ୍ମ ସମର୍ପଣ କଲେ ।[୨୦] ବନ୍ଦୀ ରାଜଗୁରୁ ଅନୁଭବ କରିଥିଲେ, ସେ ଯଦି ସମସ୍ତ ଦୋଷ ନିଜ ମୁଣ୍ଡକୁ ନ ନିଅନ୍ତି ତେବେ ରାଜାଙ୍କୁ ମଧ୍ୟ ଦଣ୍ଡ ହୋଇଯାଇପାରେ । ତେଣୁ ସେ ନିଜ ଜୀବନ ବାଜି ଲଗାଇ କହିଥିଲେ -

'ସହଜେ ମୁହିଁ ଯେ କରିଛି ସିନା ଦୋଷ,
ମୋହ ଲାଗି ରାଜ୍ୟଭ୍ରଷ୍ଟ ହୋଇଲେ ନରେଶ ।' (୧୦/୧୦୪)

ଏହି ସ୍ୱୀକାରୋକ୍ତି ପରେ ପରେ ହିଁ ରାଜଗୁରୁ ମେଦିନପୁରର ବାଘିତୋଟାଠାରେ ବର୍ବରୋଚିତ ଓ ବିଭତ୍ସ ଭାବରେ ଫାସି ଦିଆଯାଇଛି ଏବଂ ମୁକୁନ୍ଦ ଦେବଙ୍କୁ ମଧ୍ୟ ମେଦିନପୁର ଜେଲ୍‌କୁ ସ୍ଥାନାନ୍ତରିତ କରାଯାଇଛି ।[୨୧]

ମୋଟାମୋଟି ଭାବରେ କହିବାକୁ ଗଲେ 'ଫିରିଙ୍ଗି କଳି ଭାରତ' କେବଳ ଏକ ପୁରାଣ ଶୈଳୀରେ ରଚିତ କାବ୍ୟ କହି ଅବହେଳା କରାଯାଇପାରିବ ନାହିଁ । ଏହାର ଐତିହାସିକ ମହତ୍ୱ ଯଥେଷ୍ଟ ରହିଛି । ଜୟୀ ରାଜଗୁରୁଙ୍କୁ ନେଇ ମଧୁ ବିପ୍ରଙ୍କର ଚିତ୍ରଣରୁ ସ୍ପଷ୍ଟ ଅନୁଭୂତ ହୁଏ ଯେ, ମୋର ମନୋବାକ୍ୟରେ ତଥା ନିଃସ୍ୱାର୍ଥପର ଭାବରେ ଜୟୀ ରାଜଗୁରୁ ଥିଲେ ଜାତିପ୍ରାଣ ଏବଂ ଇଂରେଜ ବିତାଡ଼ନର ପ୍ରଥମ ବିଦ୍ରୋହୀ ଶହୀଦ୍ ।

**ପାଦଟୀକା :**

୧. ୧୬-୧୦-୧୮୦୩ରେ ଗୋବିନ୍ଦ ମାହେରଙ୍କ ହାତରେ ପ୍ରେରିତ ଚିଠି ।

୨. 'କମର ମାସ ସଖୀ ହୋଇଛି ବିଦ୍ୟମାନ, ମାସର ଭୋଗ ଆସି ହୋଇଛି ତେର ଦିନ । (୧/୭୪)

୩. Traslation of Persion Records no.-398/ Orissa under the Marathas by B.C. Roy, p-59.

୪. ଏ ମୁକୁନ୍ଦ ଦେବ ନୃପତି ସାତ ଅଙ୍କ / ପୃଥିବୀମାନଙ୍କରେ ଯେ ପଡ଼ଇ ମଡ଼କ । (୧/୭୧)

୫. ସହଜେ ମହି ପତି ଯେ ଅଳ୍ପ ବୟସ / ତେଜପୁଞ୍ଜ ପ୍ରକାଶେ କି ଝଟକେ ଅବତଂଶ (୧/୮୩)

୬. ଖୁରୁଧା ଇତିହାସ, କେଦାର ନାଥ ମହାପାତ୍ର ।

୭. ଧନହୀନ ରାଜ୍ୟ ହୋଇଲା ମୋହର / ବାରେ କୃପା କର ଦେବ ଚକ୍ରଧର । (୬/୧୧)

୮. ଜର୍ଣ୍ଣଲ କପିତାନ ହାଙ୍କେର ହରକଟ / ଜର୍ଣ୍ଣେଲ ଫୁଲୁଟରି ମିଲିମିଳି ନାଟ । (୯/୨୭୩)

୯. ଲକ୍ଷେ ଟଙ୍କା ଆବର ଅଳଙ୍କାର ଯେତେ / ତୋଷ କରି ରାଜା ଲେଖାଅ ଶ୍ରୀହସ୍ତେ । (୮/୩୬୩)

୧୦. ଚୁକ୍ତି ଦଲିଲ, Volume no.-10 (Board of Revenue), pp. 10-15ରେ ଉଲ୍ଲେଖ ଅଛି ।

୧୧. ଟଙ୍କା ଲାଞ୍ଚ ପାଇ ରାଜଗୁରୁ ଦୃଷ୍ଟ / ବାଟ ଜମିଦାରଙ୍କୁ କରିଲେ ଆକଟ । (୮/୩୨୫)

୧୨. କନିଅର ସୁକଦେବ ଦୁହେଁ କରଯୋଡ଼ି / ବୋଇଲେ ଗୋସାଇଁ ଆମ୍ଭଙ୍କୁ ଦିଅ ଛାଡ଼ି । (୮/୩୨୧)

୧୩. ଯାଅ ଯାଅ ମୁନୁସୀ ରାଜଗୁରୁ ଯିବେ / ସାହେବ ସଙ୍ଗେ ଭେଟ କରିଣ ଆସିବେ । (୮/୪୦୨)

୧୪. କ୍ରମେ ନ'ଙ୍କ ଶେଷ ହେଲା ଆସି / ସାହେବ ଭେଟକୁ ରାଜଗୁରୁ ଦେଲେ ପେଷି । (୯/୨)

୧୫. ନବମ ଅଧ୍ୟାୟ - ୨୮ ପଦଠାରୁ ୩୪ ପଦଯାଏଁ ବର୍ଣ୍ଣିତ ।

୧୬. ପୁଣି ରାମଚନ୍ଦ୍ର ଭ୍ରମରବର କହି / ସର୍ବ ଅଧିକାରୀ ସେ ବ୍ରାହ୍ମଣ ଅଟଇ । (୯/୧୨୮)

୧୭. ଏବେ ତୁମ୍ଭଙ୍କୁ ଯେ ନାହିଁ କିଛି ଭୟ / ନିଶ୍ଚିନ୍ତେ ଘାଟିକି ଏବେ କର ଜୟ । (୯/୧୩୨)

୧୮. ଭୋଦେବ ଛାଡ଼ିବା ହେଉ ଘାଟିରୁ ନିଜ ଆସ / ଦେଶୀ ଯୋଦ୍ଧାଙ୍କ ଯୋଗୁଁ ଫିରିଙ୍ଗି କଲା ନାଶ । (୯/୩୩୦)

୧୯. ରାଜାଙ୍କ ଆତ୍ମ ଗୋପନ ପରେ ପିଣ୍ଡିକି ହରିଚନ୍ଦନ ନେଇଯାଇଥିବା ସନ୍ଧି ପ୍ରସ୍ତାବକୁ ଅଗ୍ରାହ୍ୟ କରି କର୍ଣ୍ଣେଲ ହାରକୋଟ ଯେଉଁ ପ୍ରସ୍ତାବ ଦେଇଥିଲେ ସେ ସଂପର୍କରେ ଫିରିଙ୍ଗି କଳି ଭାରତରେ ଉଲ୍ଲେଖ ଅଛି -

'ବୋଇଲେ ତୁ ହୋ ଆସିଛୁ କେଉଁ ଜନ
ଆସି ଭେଟ କରୁ ସେ ରାଜଗୁରୁ ବ୍ରାହ୍ମଣ ।' (୧୦/୩୧)

୨୦. ଏବେ ଦଶଅଙ୍କ ମକର ଚାରିଦିନେ
ନୃପତିଙ୍କି ଅସୁର ଦେଖିଲା ବିଦ୍ୟମାନେ । (୧୦/୧୩୪)

୨୧. ବନ୍ଦୀ ମୁକୁନ୍ଦ ଦେବଙ୍କୁ ଖୋର୍ଦ୍ଧା ବା ବାରବାଟୀଠାରେ ରଖିଲେ ପ୍ରଜାବିଦ୍ରୋହର ସମ୍ଭାବନାକୁ ଆଖି ଆଗରେ ରଖି ମେଦିନପୁରକୁ, ସ୍ଥାନାନ୍ତର କରାଯାଇଥିଲା । ଏହି ଇତିହାସ ସମ୍ମତ ବିବରଣୀ 'ଫିରିଙ୍ଗି କଳି ଭାରତ'ରୁ ମଧ ମିଳେ -

'ଜଗତ ଈଶ୍ୱର ରାଜାମାନଙ୍କ ମୁକୁଟ
ତାଙ୍କୁ ଧରି ରଖିଲେ ମେଦିନିପୁର କୋଟ ।' (୧୧/୬୧୦)

ବିଭାଗୀୟ ମୁଖ୍ୟ, ଓଡ଼ିଆ ବିଭାଗ
ଶ୍ରୀ ଜଗନ୍ନାଥ ବେଦ କର୍ମକାଣ୍ଡ ମହାବିଦ୍ୟାଳୟ
ସ୍ୱର୍ଗଦ୍ୱାର ରୋଡ଼, ପୁରୀ



ଲୋକନାୟକ ଜୟପ୍ରକାଶ ନାରାୟଣ ଜୟନ୍ତୀ ଅବସରରେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଗହଣରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ, ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଏବଂ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ । ୧୧.୧୦.୦୬



# କବି ନୀଳକଣ୍ଠ

ସ୍ୱାତୀ ତନ୍ମୟା ପଣ୍ଡା

ପଣ୍ଡିତ ନୀଳକଣ୍ଠ ସତ୍ୟବାଦୀ ଯୁଗର କବି ଥିଲେ । ପଣ୍ଡିତ ନୀଳକଣ୍ଠଙ୍କ ଜୀବନ ହେଉଛି ନିର୍ଭୀକତା, ସାହସ, ଜ୍ଞାନ, ସେବା ଓ ସତ୍ୟନିଷ୍ଠାର ଏକ ପରିପୂର୍ଣ୍ଣ ଗ୍ରନ୍ଥ । ସେ ହେଉଛନ୍ତି ସେହି ମହାମାନବ, ଯାହାଙ୍କର ଦୃଢ଼ ପଦକ୍ଷେପ, ତ୍ୟାଗ ଓ ନୂତନ ଦୃଷ୍ଟିଭଙ୍ଗୀ ଉତ୍କଳ ଭୂମିର ଲକ୍ଷ ଲକ୍ଷ ଜନତାଙ୍କ ହୃଦୟକୁ ଅଭିଭୂତ କରିପାରୁଥିଲା । ସମାଜକୁ ନୂତନ ଦିଗ୍‌ଦର୍ଶନ ଓ ପରିବର୍ତ୍ତନର ବାର୍ତ୍ତା ଦେଇପାରିଥିଲା । ଏହି ଯୁଗ ପୁରୁଷ ଧର୍ମାନ୍ଧତା ଓ ଅନ୍ଧ ପାରମ୍ପରିକତାର ବିଶାଳ ମହୀରୁହକୁ ସମୂଳେ ଉତ୍ପାଟନ କରିବାର ପ୍ରଚେଷ୍ଟା ଆରମ୍ଭ କରିଥିଲେ । ନିଜର କାୟ, ମନ ଓ ବଚନକୁ ବିନିଯୋଗ କରି ଓଡ଼ିଆ ଜାତିକୁ ଅଜ୍ଞାନ ଅନ୍ଧକାର ମଧ୍ୟରୁ ଜ୍ଞାନର ଆଲୋକ ମଧ୍ୟକୁ ଆଣିବାର ପ୍ରୟାସ ସେ କରିଥିଲେ । ତାଙ୍କ ପରି ବ୍ୟକ୍ତିତ୍ୱ ପୃଥିବୀ ପୃଷ୍ଠରେ ଅନେକ ଶତାବ୍ଦୀ ପରେ ଥରେ ଜନ୍ମ ନେଇଥାନ୍ତି ।

ନୀଳକଣ୍ଠ ଜୀବଦ୍ଦଶାରେ ଜଣେ ମହାନ ବ୍ୟକ୍ତି ଥିଲେ, ମୃତ୍ୟୁ ତାଙ୍କର ମହାନତାକୁ ଆହୁରି ଅଧିକ ପରିବର୍ଦ୍ଧିତ କରିଥିଲା ଏବଂ ଆଗାମୀ ଯୁଗ ପାଇଁ ତାଙ୍କର ମହତ କାର୍ଯ୍ୟ ଚିର ଜାଜ୍ୱଲ୍ୟମାନ ରହିବ । ସଂକଟ ସମୟରେ ସେ ଥିଲେ ସ୍ଥିତପ୍ରଜ୍ଞ, ଦଳିତ ନିଷ୍ପେଷିତମାନଙ୍କ ପାଇଁ ଦେବଦୂତ ଓ ଉତ୍କଳର ଶିକ୍ଷା ଆକାଶରେ ଚିର ଦୀପ୍ତିମାନ ଭାସ୍କର । ତାଙ୍କୁ ଧର୍ମ ସଂସ୍କାରକ କୁହାଯାଇପାରେ, ସମାଜ ସେବକ ମଧ୍ୟ କୁହାଯାଇପାରେ । ଭାରତୀୟ ସଭ୍ୟତା, ସଂସ୍କୃତି ଓ ଶିକ୍ଷାର ଏକ ଦୃଢ଼ ପ୍ରବକ୍ତା ଭାବରେ ସେ ଚିର ନମସ୍ୟ ।

ନିଜ ବ୍ୟକ୍ତିଗତ ଜୀବନରେ 'ବେଦ' ଓ 'ଗୀତା' ତାଙ୍କର ପ୍ରେରଣାର ମୁଖ୍ୟ ସ୍ରୋତ ଥିଲା । ରାଜନୈତିକ ଓ ସାମାଜିକ କାର୍ଯ୍ୟାବଳୀ ସବୁ ଗୋପବନ୍ଧୁଙ୍କର ପ୍ରେରଣାରେ ସଫଳ ହୋଇପାରିଥିଲା । ଡଃ ମାୟାଧର ମାନସିଂହଙ୍କ ଭାଷାରେ, 'ପଣ୍ଡିତ ନୀଳକଣ୍ଠ ପ୍ରକୃତରେ ପଣ୍ଡିତ । ତାଙ୍କ ନିକଟରେ ମୁଁ ଶିଶୁ - ବୟସ ଓ ଜ୍ଞାନରେ ।' ଉତ୍କଳ ମାତାର ଏହି ବରେଣ୍ୟ ପୁତ୍ର କେବଳ ଯେ ଜଣେ ସମାଜ ସଂସ୍କାରକ ଶିକ୍ଷାବିତ୍ ଓ ରାଜନୈତିକ କର୍ମୀ ଥିଲେ ତା' ନୁହେଁ, ନିଜ କଲମ ଚାଳନା କରି ସେ ଅନେକ କାବ୍ୟ-କବିତା ଦ୍ୱାରା ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲେ । 'କୋଣାର୍କେ' କାବ୍ୟ ପାଇଁ ଭୂମିକା ଲେଖିବାକୁ ଯାଇ କବି ମାୟାଧର ମାନସିଂହ ମତ ପ୍ରକାଶ କରିଛନ୍ତି, ଯାହା ଉପରେ ଓଡ଼ିଆ ସାହିତ୍ୟରେ କୌଣସି କବି ଲେଖନୀ ଚାଳନା କରିନଥିଲେ ।

ଓଡ଼ିଶାରେ ପ୍ରକୃତ ଶିକ୍ଷାର ପ୍ରସାର ପାଇଁ ସେ ସ୍ଥାପନ କରିଥିଲେ ସତ୍ୟବାଦୀ ବନବିଦ୍ୟାଳୟ । କ୍ରମେ ଏହି ବିଦ୍ୟାଳୟ କେବଳ ଶିକ୍ଷା କାହିଁକି ବରଂ ସମାଜ ସଂସ୍କାର ଏବଂ ରାଜନୈତିକ କାର୍ଯ୍ୟର ପ୍ରାଣକେନ୍ଦ୍ର ହୋଇପଡ଼ିଲା । ଏହି ବିଦ୍ୟାଳୟର ପରିସର ମଧ୍ୟରେ ଯେଉଁମାନେ ଆବଦ୍ଧ ଥିଲେ, ସେମାନେ ଜଣେ ଜଣେ ମହାପୁରୁଷ । ତନ୍ମଧ୍ୟରୁ ମନିଷୀ- ନୀଳକଣ୍ଠ, ଉତ୍କଳମଣି ଗୋପବନ୍ଧୁ, ଆଚାର୍ଯ୍ୟ ହରିହର, ପଣ୍ଡିତ ଗୋଦାବରୀଶ ଓ କୃପାସିନ୍ଧୁ ଆଦିଙ୍କ ନାମ ସ୍ମରଣକୁ ଆସେ । ଗୋପବନ୍ଧୁ ଥିଲେ ସମସ୍ତଙ୍କର ପ୍ରେରଣାର ଉତ୍ସ । ମାତ୍ର ଗୋପବନ୍ଧୁ ନୀଳକଣ୍ଠଙ୍କ ପାଣ୍ଡିତ୍ୟ ଓ ସଂଗଠନ ଶକ୍ତି ଉପରେ ସର୍ବାଧିକ ଆସ୍ଥା ସ୍ଥାପନ କରିଥିଲେ । ପ୍ରଥମେ ନୀଳକଣ୍ଠ ହିଁ ସତ୍ୟବାଦୀର ଛୁରିଆନା ବକୁଳ ବନରେ ଏକ ବିଦ୍ୟାଳୟ ପ୍ରତିଷ୍ଠା କରିବାର ଯୋଜନା ଉପସ୍ଥାପିତ କରିଥିଲେ । ନିଜେ ପ୍ରଧାନ ଶିକ୍ଷକ ରହି ଗୋଦାବରୀଶ, କୃପାସିନ୍ଧୁ ଓ ହରିହର ଆଦି ଯୋଗଜନ୍ମା ବ୍ୟକ୍ତିମାନଙ୍କର ସାହଚର୍ଯ୍ୟରେ ବିଦ୍ୟାଳୟକୁ ଏକ ଆଦର୍ଶ ଅନୁଷ୍ଠାନରେ ପରିଣତ କରିଥିଲେ ।

ସତ୍ୟବାଦୀ ବନବିଦ୍ୟାଳୟରେ ନୀଳକଣ୍ଠ ଛାତ୍ରମାନଙ୍କ ଶିକ୍ଷାଲାଭର ଦିଗ ପ୍ରତି ଦୃଷ୍ଟି ଦେବା ସଂଗେସଂଗେ ଅନେକ ସୁସ୍ଥ ପରମ୍ପରା ସୃଷ୍ଟି କରିଥିଲେ । ସେ ସେହି ସବୁ ଅଭ୍ୟାସକୁ ଗୁରୁତ୍ୱ ପ୍ରଦାନ କରୁଥିଲେ ଯଦ୍ଦ୍ୱାରା ଛାତ୍ରର ସର୍ବାଙ୍ଗୀନ ଉନ୍ନତି ସମ୍ଭବ ହେଉଥିଲା । ଓଡ଼ିଶାର ପୁରାତନ ସାଂସ୍କୃତିକ ପରମ୍ପରାଗୁଡ଼ିକ କେଉଁ ଉଚ୍ଚ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ ଏବଂ ସେଗୁଡ଼ିକୁ କିପରି ସାମ୍ପ୍ରତିକ ପରିସ୍ଥିତିରେ କାର୍ଯ୍ୟରେ ବିନିଯୋଗ କରିହେବ, ତାହା ଅନୁଶୀଳନ କରିବା ତାଙ୍କର ଏକ ମୌଳିକ ଗୁଣ ଥିଲା । ଏହି ପରିପ୍ରେକ୍ଷୀରେ ସେ ବନବିଦ୍ୟାଳୟରେ ସଂକୀର୍ତ୍ତନ ଭଳି ପୁରାତନ ପରମ୍ପରାର ପୁନଃ ପ୍ରବର୍ତ୍ତନ କରିଥିଲେ ।

ପୁରୀ ଜିଲ୍ଲାର ଶ୍ରୀରାମଚନ୍ଦ୍ରପୁର ଗ୍ରାମରେ ନୀଳକଣ୍ଠ ଏକ ନୈଷ୍ଠିକ ବ୍ରାହ୍ମଣ ପରିବାରରେ ୧୮୮୪ ମସିହା ଅଗଷ୍ଟ ୫ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଆନନ୍ଦ ଦାଶ । ବାରମ୍ବାର କନ୍ୟା ପ୍ରାପ୍ତି ପରେ ନୀଳକଣ୍ଠଙ୍କ ମାଆ ପୁଅ ପାଇଁ ବିଭିନ୍ନ ଓଷା ବ୍ରତ ଆଦି କରୁଥିଲେ । ତାଙ୍କର ପରମ ଆରାଧ୍ୟ ଦେବତା ଥିଲେ ନୀଳକଣ୍ଠ । ସେହି ମହାଦେବଙ୍କ କୃପାରୁ ଅଷ୍ଟମ ଗର୍ଭରେ ପୁତ୍ରଲାଭ କରିଥିବାରୁ ତାଙ୍କର ନାମ ନୀଳକଣ୍ଠ ରଖାଯାଇଥିଲା ।

୬ ବର୍ଷ ବୟସରେ ୬/୭ ମାସ ପର୍ଯ୍ୟନ୍ତ ନୀଳକଣ୍ଠ ଚାହାଳୀରେ ପାଠପଢ଼ା ଶେଷ କରିଥିଲେ । ସେ ଚାହାଳୀର 'କ' ପରୀକ୍ଷା, 'ଖ' ପରୀକ୍ଷା, ପ୍ରାଇମେରୀ ପରୀକ୍ଷା ଆଦି ପାସ୍ କରିଥିଲେ । ନୀଳକଣ୍ଠ 'ଖ' ପରୀକ୍ଷାରେ ପାସ୍ ହୋଇ ଗୁରୁଜୀଙ୍କଠାରୁ ଦୁଇଟଙ୍କା ପୁରସ୍କାର ପାଇଥିଲେ । 'କ' ପରୀକ୍ଷାରେ ପାସ୍ କଲାପରେ ତିନି ଟଙ୍କା ଓ ପ୍ରାଇମେରୀ ପାସ୍ କଲାପରେ ପାଞ୍ଚଟଙ୍କା ପୁରସ୍କାର ପାଇଥିଲେ । ନୀଳକଣ୍ଠ ପୁରୀ ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ ଓ ଦେଢ଼ ଟଙ୍କା ମେସ୍ ଖର୍ଚ୍ଚ ଦେଇ ସେ ଛାତ୍ରାବାସରେ ରହିଥିଲେ । ତା'ପରେ ସେ ଭର୍ଣ୍ଣାକୁଲାର ବା ସପ୍ତମ ଶ୍ରେଣୀ ପାଶ୍ କରିଥିଲେ । ଏହିପରି ଭାବରେ ସେ ପୁରୀ ଜିଲ୍ଲା ସ୍କୁଲରୁ ମାଧ୍ୟମିକ ଶିକ୍ଷା ସମାପ୍ତ କରିଥିଲେ ।

୧୯୦୫ ମସିହା ଫେବୃଆରୀ ୫ ତାରିଖରେ ନୀଳକଣ୍ଠଙ୍କ ବିବାହ ଗୋଟିଏ ନିମ୍ନ ମଧ୍ୟବିତ୍ତ ପରିବାରର କର୍ତ୍ତା ବୀର ପୁରୁଷୋତ୍ତମପୁରର ଶ୍ରୀ ସୋମନାଥ ମିଶ୍ରଙ୍କ କନ୍ୟା ରାଧାରାଣୀ ଦେବୀଙ୍କ ସହ ସମ୍ପାଦିତ ହୋଇଥିଲା ।

ପାଠପଢ଼ାରେ ମଧ୍ୟ ନୀଳକଣ୍ଠଙ୍କର ଜାତୀୟତାଭାବ ସୃଷ୍ଟି ହୋଇଥିଲା । ସେ ବୃତ୍ତି ପାଇ ଏଫ୍.ଏ. ପାଶ୍ କରି ବି.ଏ.ରେ ନାମ ଲେଖାଇଲେ । ସେ କେମେଷ୍ଟ୍ରି ଓ ଦର୍ଶନ ନେଇ ବି.ଏ. ପାଠ ପଢ଼ିଲେ । ସେ ପାଠକୁ ଆୟତ କରିବାକୁ କେମେଷ୍ଟ୍ରି ବହିକୁ ଅଣାଅଣୀ ଥର ପଢ଼ି ନିଜର କରି ନେଲେ । ଶେଷରେ ବି.ଏ. ପରୀକ୍ଷାରେ ସମଗ୍ର କଲିକତା ବିଶ୍ୱବିଦ୍ୟାଳୟରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିଲେ । ବି.ଏ. ପାଶ୍ କଲାପରେ ନୀଳକଣ୍ଠ କଲିକତା ଯାଇ ଏମ୍.ଏ. ଓକିଲାତିରେ ନାମ ଲେଖାଇଲେ । ଦୁଇ ବର୍ଷ ପରେ ଏମ୍.ଏ. ପାଶ୍ କଲେ ସତ, ମାତ୍ର ଓକିଲାତି ପଢ଼ିଲେ ନାହିଁ ।

ଗୋପବନ୍ଧୁ, ନୀଳକଣ୍ଠ, ହରିହର, ଗୋଦାବରୀଶ, କୃପାସିନ୍ଧୁ ପ୍ରଭୃତି ନବଯୁଗର ପଞ୍ଚସଖା ସେତେବେଳେ ସହଜ ଲଭ୍ୟ ଯାବତୀୟ ସ୍ୱାର୍ଥମୂଳକ ପ୍ରଲୋଭନ ବିସର୍ଜନ କରିଥିଲେ । ଦେଶାତ୍ମବୋଧରେ ଅନୁପ୍ରାଣିତ ହୋଇ ସାକ୍ଷୀଗୋପାଳ ମନ୍ଦିର ନିକଟରେ ବକୁଳ ଛୁରୀଆନା ବନରେ ସତ୍ୟବାଦୀ ବନବିଦ୍ୟାଳୟ ୧୯୦୯ରେ ପ୍ରତିଷ୍ଠା ହୋଇଥିଲା ।

ଗୋପବନ୍ଧୁ ସତ୍ୟବାଦୀ ସ୍କୁଲର ପ୍ରତିଷ୍ଠାତା ଓ ସମ୍ପାଦକ ଥିଲେ । ନୀଳକଣ୍ଠ ପରିଚାଳକ ବା ସୁପରିଟେଣ୍ଡେଣ୍ଟ ହେଡମାଷ୍ଟର ଥିଲେ । ସତ୍ୟବାଦୀ ବିଦ୍ୟାଳୟ ଥିଲା ପୁରାତନ ଆର୍ଯ୍ୟ ଗୁରୁକୁଳର ଏକ ନିଚ୍ଛକ ପ୍ରତିବିମ୍ବ । ସେ ସମୟର ସମସ୍ତ ନିୟମମାନ ଏଠାରେ ପ୍ରବର୍ତ୍ତିତ କରାଯାଇଥିଲା । ଛାତ୍ରମାନଙ୍କ ସରଳ ଜୀବନଯାପନ ଓ ଚରିତ୍ରଗଠନ ତଥା ଜାତି ପ୍ରୀତିକୁ ସର୍ବାଧିକ ଗୁରୁତ୍ୱ ପ୍ରଦାନ କରାଯାଉଥିଲା । ସେବା ସେମାନଙ୍କ ଜୀବନର ମୂଳମନ୍ତ୍ର ଥିଲା । ସ୍ୱାଧୀନ, ନିଷ୍କଳଙ୍କ, ସେବା ପରାୟଣ ଓ ନିର୍ଭୀକ ଚରିତ୍ର ଗଠନ ପାଇଁ ଏହି ଅନୁଷ୍ଠାନ ଗଢ଼ା ହୋଇଥିଲା । ପିଲାମାନେ ଆତ୍ମନିର୍ଭରଶୀଳ ହୋଇ ସେମାନଙ୍କର ଭବିଷ୍ୟତ ଗଢ଼ିବା ପାଇଁ ସେମାନଙ୍କୁ ବିଭିନ୍ନ ବୃତ୍ତିଗତ ଶିକ୍ଷା ଦିଆଯାଉଥିଲା ।

ଜୀବନର ଶେଷ ପର୍ଯ୍ୟନ୍ତ ଅଧ୍ୟୟନ କରିବା ତାଙ୍କର ଅଭ୍ୟାସରେ ପଡ଼ି ଯାଇଥିଲା । ତାଙ୍କର ଅଗାଧ ପାଣ୍ଡିତ୍ୟ ଯୋଗୁଁ ତାଙ୍କୁ ସମସ୍ତେ ବିଶ୍ୱକୋଷ (ଏନ୍ସାଇକ୍ଲୋପେଡ଼ିଆ) ଓ ଭ୍ରାମ୍ୟମାଣ ଛାତ୍ରଙ୍କ ପାଠାଗାର ଆଖ୍ୟା ଦେଇଥିଲେ ।

ନୀଳକଣ୍ଠଙ୍କର କର୍ମକ୍ଳାନ୍ତ ଶରୀର ଧୀରେ ଧୀରେ ସଂପୂର୍ଣ୍ଣ ଅବଶ ହୋଇ ଆସିଲା । ଶେଷରେ ୧୯୬୭ ନଭେମ୍ବର ୬ ତାରିଖ ସୋମବାର ଦିନ ଅପରାହ୍ଣ ୪ ଘଟିକା ୧୫ ମିନିଟ୍ ସମୟରେ ୮୩ ବର୍ଷର ଏକ କିମ୍ବଦନ୍ତୀ ଅନ୍ତ ହୋଇଯାଇଥିଲା । ଓଡ଼ିଶାର ଭାଗ୍ୟାକାଶରୁ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର ଚିରଦିନ ପାଇଁ ଲିଭି ଯାଇଥିଲା ।

ଜୀବନକାଳ ମଧ୍ୟରେ ନୀଳକଣ୍ଠ ବହୁ କବିତା, ପ୍ରବନ୍ଧ ଓ ସମାଲୋଚନା ପୁସ୍ତକ ଆଦି ରଚନା କରିଥିଲେ । ପ୍ରଣୟିନୀ, କୋଣାର୍କେ, ଖାରବେଳ, ଦାସ ନାଏକ, ଆର୍ଯ୍ୟ ଜୀବନ, ଓଡ଼ିଆ ଭାଷା ଓ ସାହିତ୍ୟ, ଓଡ଼ିଆ ସାହିତ୍ୟର କ୍ରମ ପରିମାଣ, ଶ୍ରୀମଦ୍ ଭାଗବଦ୍ ଗୀତାର ଭୂମିକା, ପିଲାଙ୍କ ରାମାୟଣ, ପିଲାଙ୍କ ଭାଗବତ ଆଦି ତାଙ୍କର ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ସମୂହ ।

ବି.ଏ. ପଢ଼ିଲାବେଳେ ସେ ଟେନିସନ୍ଙ୍କ The Princess କାବ୍ୟ ଅବଲମ୍ବନରେ ପ୍ରଣୟିନୀ ରଚନା ଆରମ୍ଭ କରିଥିଲେ । ୧୯୩୯ ମସିହାରେ ସେ 'କୋଣାର୍କେ' କାବ୍ୟ ରଚନା କରିଥିଲେ । ନିଶ ରଖି ସମ୍ପ୍ରଦାୟ ମଧ୍ୟରେ ହଇଚଇ ସୃଷ୍ଟି କରିଥିଲେ । ତାଙ୍କର 'ମୋ ନିଶ' ପ୍ରବନ୍ଧ ଏ ଦିଗରେ ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି । ପରମ୍ପରା ଓ ସଂସ୍କୃତି ନାମରେ ସେ କୁ-ସଂସ୍କାରକୁ ପ୍ରଶ୍ରୟ ଦେଉନଥିଲେ । ନୂତନତାର ସେ ଥିଲେ ଉପାସକ । 'ଅଛୁ ଓ ହେବୁ' ପ୍ରବନ୍ଧ ତାଙ୍କର ପ୍ରଚଣ୍ଡ ବ୍ୟକ୍ତିତ୍ୱର ପରିଚୟ ପ୍ରଦାନ କରିଥାଏ । ଦୈନିକ ନବଭାରତ ନାମକ ମାସିକ ପତ୍ରିକାର ସେ ଥିଲେ ସମ୍ପାଦକ । ତା'ଛଡ଼ା ଦୈନିକ ସମାଜ, ମାସିକ ନବଭାରତ, ଲୋକମତ ଆଦି ପତ୍ରିକାଗୁଡ଼ିକର ସେ ସମ୍ପାଦକ ମଧ୍ୟ ଥିଲେ ।

୧୯୫୫ ମସିହା ଅଗଷ୍ଟ ୩୧ ତାରିଖରେ ବିଶ୍ୱବିଦ୍ୟାଳୟ ପାଇଁ ନୀଳକଣ୍ଠଙ୍କ ଅବଦାନକୁ ସମାଜ ଦେଖାଇ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ଉପକୁଳାଧିପତି (ପ୍ରୋ. ଚାନ୍ସଲର) ପଦରେ ଅଧିଷ୍ଠିତ କରିଥିଲେ । ନୀଳକଣ୍ଠ ବିଶ୍ୱବିଦ୍ୟାଳୟର ସିନେଟ୍ର ସଭାପତି ରୂପେ ବିଶ୍ୱବିଦ୍ୟାଳୟର ପରିଚାଳନା କରିଥିଲେ । ୧୯୫୫ ମସିହା ଡିସେମ୍ବର ୨୧ ତାରିଖରେ ତାଙ୍କର ପାଣ୍ଡିତ୍ୟ ପାଇଁ ସେହି ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ତାଙ୍କୁ ଡଃ. ଅଫ୍ ଲିଟେରେଚର (ଡି.ଲିଟ୍) (ସାହିତ୍ୟ) ଉପାଧି ପ୍ରଦାନ କରାଯାଇଥିଲା । ୧୯୫୮ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ସମ୍ମାନ ପାଇଥିଲେ ଏବଂ ଭାରତ ସରକାର ତାଙ୍କୁ 'ପଦ୍ମଭୂଷଣ' ଉପାଧିରେ ସମ୍ମାନିତ କରିଥିଲେ ।

**ସହାୟକ ପୁସ୍ତକ :**

୧. କବି ମନିଷୀ ନୀଳକଣ୍ଠ - ଲେ. ପଠାଣି ପଟ୍ଟନାୟକ

୨. ନୀଳକଣ୍ଠ ଗ୍ରନ୍ଥାବଳୀ - ପ୍ରକାଶକ- କଟକ ଷ୍ଟୁଡେଣ୍ଟସ ଷ୍ଟୋର, କଟକ

୩. ପଣ୍ଡିତ ନୀଳକଣ୍ଠ - ଲେ- ବିରଞ୍ଚି ନାରାୟଣ ଦାଶ

ମାଫର୍ତ- ଶ୍ରୀ ଚିତ୍ତ ରଂଜନ ପଣ୍ଡା
ସରକାରୀ ମହାବିଦ୍ୟାଳୟ ଛକ
କନ୍ଧମାଳ

# କଳିଙ୍ଗର ଦରିଆପାରି ନୌବାଣିଜ୍ୟ ଓ ବୋଇତ ଯାତ୍ରା

ଡଃ ଚନ୍ଦ୍ରଭାନୁ ପଟେଲ୍

ମୌର୍ଯ୍ୟମାନଙ୍କ ପୂର୍ବରୁ କଳିଙ୍ଗ ଏକ ଶକ୍ତିଶାଳୀ ରାଜ୍ୟ ରୂପେ ପରିଚିତ ଥିଲା । ସେତେବେଳେ କଳିଙ୍ଗ ତିନି ପ୍ରଦେଶ ଯଥା:- (୧) ପ୍ରାଚୀ କଳିଙ୍ଗ (୨) ଗଙ୍ଗାରାଇଡ କଳିଙ୍ଗ ଓ (୩) ମଗ କଳିଙ୍ଗ ନାମରେ ବିଭକ୍ତ ହୋଇଥିଲା । ପ୍ରାଚୀ ବା ପ୍ରାଚ୍ୟ କଳିଙ୍ଗ ଗୋଦାବରୀ ଠାରୁ ସୁବର୍ଣ୍ଣରେଖା ପର୍ଯ୍ୟନ୍ତ, ଗଙ୍ଗ ରାଇଡ କଳିଙ୍ଗ ସୁବର୍ଣ୍ଣରେଖାଠାରୁ ଗଙ୍ଗା ନଦୀ ପର୍ଯ୍ୟନ୍ତ ଓ ମଗ କଳିଙ୍ଗ ଗଙ୍ଗାନଦୀର ମୁହାଣ ଠାରୁ ଦକ୍ଷିଣ ପୂର୍ବ ଦ୍ୱୀପପୁଞ୍ଜର ଶେଷ ସୀମା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଇତିହାସରୁ ଜଣାପଡେ ଯେ, ଏହି ପୂର୍ବାଞ୍ଚଳ ଦ୍ୱୀପପୁଞ୍ଜସ୍ଥିତ ଅଧୁନା ଇଣ୍ଡୋଚୀନ, ଇଣ୍ଡୋନେସିଆ, ମଳୟ ଓ ବ୍ରହ୍ମଦେଶ ଆଦି ଉତ୍କଳର ଉପନିବେଶ ତଥା ବାଣିଜ୍ୟ ପେଣ୍ଠ ଥିଲା । କଳିଙ୍ଗର ଅଧିବାସୀମାନେ ଦେଶ ଦେଶାନ୍ତର, ଦ୍ୱୀପ ଦ୍ୱୀପାନ୍ତର ସହିତ ବାଣିଜ୍ୟ ବିସ୍ତାର କରି ଅମାପ ଧନ ସମ୍ପଦ ଦେଶକୁ ଆଣୁ ଥିଲେ । କହିବା ବାହୁଲ୍ୟ କଳିଙ୍ଗବାସୀ ଅର୍ଣ୍ଣବ ପୋତ ବିଦ୍ୟାରେ ଓ ସମୁଦ୍ର ବାଣିଜ୍ୟରେ ଅଦ୍ୱିତୀୟ କୃତିତ୍ୱ ଅର୍ଜନ କରିଥିଲେ । ଉପନିବେଶ ସ୍ଥାପନ କରିବା ସହିତ ସେମାନେ କଳିଙ୍ଗର ସଭ୍ୟତା, ସଂସ୍କୃତି, ଧର୍ମ ଓ ଦର୍ଶନ ଆଦିର ପ୍ରସାର କରିବା ସଙ୍ଗେ ସଙ୍ଗେ ସେଠାକାର ପ୍ରାଚୀନ ଅଧିବାସୀଙ୍କ ଭିତରେ ଜ୍ଞାନାଲୋକ ବିତରଣ କରିଥିଲେ । ତେଣୁ ସେଠାରେ ଆମ ସଂସ୍କୃତିର ଅନେକ ଅଲିଭା ଛାପ ଏବେ ସୁଦ୍ଧା ଦେଖିବାକୁ ମିଳେ ।

### ପ୍ରାଚୀନ ପୋତାଶ୍ରୟ

ପ୍ରାଚୀନ କାଳରେ କଳିଙ୍ଗ ଉପକୂଳ ତଥା ନଦୀ ମୁହାଣ ମାନଙ୍କରେ ଅନେକ ବନ୍ଦର ଥିବାର ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନରୁ ଜଣାପଡେ । ଚିଲିକା କୂଳରେ ପାଲୁର ଏକ ପ୍ରଧାନ ବନ୍ଦର ଥିଲା । ଗ୍ରୀକ୍ ନାବିକ ଟୋଲେମି ଏଠାରୁ ମଳୟ ଦ୍ୱୀପକୁ ବାଣିଜ୍ୟ ପଥରେ ଯାଇଥିବାର ତାଙ୍କ ସମୁଦ୍ର ଭ୍ରମଣ ବୃତ୍ତାନ୍ତରେ ବର୍ଣ୍ଣନା କରିଛନ୍ତି । ବ୍ରହ୍ମାଣ୍ଡ ପୁରାଣରେ ମଧ୍ୟ ଚିଲିକା ହ୍ରଦରେ ସହସ୍ର ପୋତ ଭାସୁ ଥିବାର ବର୍ଣ୍ଣନା କରାଯାଇଛି ।

ଚିଲିକା ହ୍ରଦେ ସହସ୍ରଂତୁ<br>
ସୁପୋତା ଜଳଗାମିନଃ ।



ନୌକାଦ୍ୱାରା ହସ୍ତୀ ରପ୍ତାନୀ

ଚନ୍ଦ୍ରଭାଗା ନଦୀ ସେତେବେଳେ କୋଣାର୍କ ନିକଟରେ ସମୁଦ୍ରରେ ମିଶିଥିଲା । ଟୋଲେମି ଏହି କୋଣାର୍କ ବନ୍ଦରକୁ କନ୍ନଗର ବା କୋଣନଗର ବୋଲି ବର୍ଣ୍ଣନା କରିଛନ୍ତି । ଏଥିରୁ ସ୍ପଷ୍ଟ ଜଣାପଡେ ଯେ, ପ୍ରାଚୀନ କାଳରେ କୋଣାର୍କ ଏକ ବିଶାଳ ନଗର ତଥା ପୋତାଶ୍ରୟ ଥିଲା । ପ୍ରତ୍ନତାତ୍ତ୍ୱିକ ଖନନ ଦ୍ୱାରା ଏବେ ଅନେକ ବହିର୍ଦେଶୀୟ ପଣ୍ୟ ଉପାଦାନ ଏଠାରୁ ଆବିଷ୍କୃତ ହୋଇଛି । ଅନ୍ୟ ଏକ ବନ୍ଦର ପୁରୀଠାରେ ଥିଲା । ଏହା ଆଦାମାସ ଓ ଚେଳିତାଳ ନାମରେ ବିଦେଶୀ ପର୍ଯ୍ୟଟକମାନଙ୍କ ଲେଖନୀରେ ବର୍ଣ୍ଣିତ । ଅଧୁନା ମେଦିନୀପୁର ଜିଲ୍ଲାର ତାମ୍ରଲିପ୍ତ ବନ୍ଦର ମଧ୍ୟ ପ୍ରାଚୀନ କଳିଙ୍ଗରେ ଥିଲା ।

ଟୋଲେମି ମହାନଦୀକୁ ମନଦ ବୋଲି ଅଭିହିତ କରିଛନ୍ତି ଓ ଏହାର କୂଳରେ ସମ୍ବଲକ (ସମ୍ବଲପୁର) ବନ୍ଦର ନଗର ଥିବାର ଉଲ୍ଲେଖ ଅଛି । ତାଙ୍କ ବର୍ଣ୍ଣନାରେ ଦୋସରା ନାମକ ଆଉ ଏକ ବନ୍ଦର, ମୁଣ୍ଡା ଓ ଶବରମାନଙ୍କର ରାଜ୍ୟ ସମ୍ବଲପୁରଠାରେ ଥିବାର ଜଣାପଡେ । ଏହା ତେଲ ନଦୀ କୂଳରେ ଆଧୁନିକ ବଲାଙ୍ଗୀର ଜିଲ୍ଲାର ତୋଷରା ବୋଲି ଚିହ୍ନିତ କରାଯାଇଛି । ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ଦ୍ୱାରା ପ୍ରାଚୀନ ସଭ୍ୟତାର ଅନେକ ସ୍ମୃତି ଚିହ୍ନ ଏବେ ଏଠାରେ ଠାବ କରାଯାଇଛି । ବୋଧହୁଏ ପ୍ରାଚୀନ କାଳରେ ତୋଷରା କୋଶଳର ରାଜଧାନୀ ଓ ପ୍ରସିଦ୍ଧ ବାଣିଜ୍ୟ କେନ୍ଦ୍ର ଥିଲା । ବୌଦ୍ଧ ଜାତକ କାହାଣୀରେ ମଧ୍ୟ ତେଲବାହ ନଦୀରେ ବାଣିଜ୍ୟ ବ୍ୟବସାୟ କାର୍ଯ୍ୟ ଚାଲିଥିବାର ବର୍ଣ୍ଣନା ରହିଛି । ଏହି ତେଲ ନଦୀ କୋରାପୁଟ ଓ ବସ୍ତର ଜିଲ୍ଲାର ସୀମାବର୍ତ୍ତୀ ତେଲବନ୍ଧଠାରୁ ବାହାରି କଳାହାଣ୍ଡି ବାଟେ ସୋନପୁରଠାରେ ମହାନଦୀରେ ମିଶିଛି । ପ୍ରାଚୀନ

ସୁକ୍ତିମତି (ସୁକତେଲ) ନଦୀ କୂଳରେ ସୁକ୍ତିମତିପୁର ନାମରେ ଆଉ ଏକ ବାଣିଜ୍ୟ ପେଣ୍ଠ ଥିବାର ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣରୁ ଜଣାପଡେ । ବଲାଙ୍ଗୀର ଜିଲ୍ଲାର ସକମା ଗ୍ରାମ ସୁକ୍ତିମତିପୁର ଭାବରେ ଏବେ ଚିହ୍ନିତ ହୋଇଛି ।

### ପ୍ରାଚୀନ ଜଳପଥ

ଅନ୍ତର୍ଦେଶୀୟ ଜଳପଥ ଦ୍ୱାରା ପଣ୍ୟ ସଂଗ୍ରହ ଓ ବିନିମୟ କରାଯାଉଥିଲା । ସମୁଦ୍ର ପଥରେ ବାଣିଜ୍ୟ କରାଯାଉଥିଲା । ତାମ୍ରଲିପ୍ତରୁ ଦାମୋଦର, ରୂପନାରାୟମ ଓ ଗଙ୍ଗାବାଟେ ଗଙ୍ଗାରାଇଡ ଅଞ୍ଚଳରେ ଦେଶୀୟ ବାଣିଜ୍ୟ ଚାଲୁଥିଲା । ନୌକାଯୋଗେ ପଣ୍ୟ ହସ୍ତିନୀ ନଗରୀ ପର୍ଯ୍ୟନ୍ତ ଯାଉଥିଲା । ଧାମରା ବନ୍ଦରରୁ ବ୍ରାହ୍ମଣୀ, ବୈତରଣୀ ଓ ସାଳନ୍ଦୀ ବାଟେ ଉତ୍କଳ ଅଞ୍ଚଳରେ ବ୍ୟବସାୟ ଚାଲୁଥିଲା । ବାଲେଶ୍ୱର ପ୍ରଭୃତିର ପଣ୍ୟ ସୁବର୍ଣ୍ଣରେଖା ବାଟେ ଆସୁଥିଲା ।

ଗଞ୍ଜାମ ଶବ୍ଦର ଅର୍ଥ ପଣ୍ୟ ଭୂମି । ପ୍ରାଚୀନ କାଳରେ ଗଞ୍ଜାମ ସମୃଦ୍ଧ ଓ ବିଭବଶାଳୀ ଥିଲା । ଏଠାକାର ପଣ୍ୟ କାରବାର ରୁଷିକୂଲ୍ୟା ଓ ଗୋଦାବରୀ ଜଳପଥ ସାହାଯ୍ୟରେ କରାଯାଉଥିଲା ।



ଲଙ୍ଗର

କୋଶଳ ରାଜ୍ୟରେ ବ୍ୟବସାୟ ବିନିମୟର ପ୍ରଧାନ ଜଳପଥ ଥିଲା ମହାନଦୀ । ପୂର୍ବେ ଏହା ଉତ୍ପତ୍ତିସ୍ଥଳଠାରୁ ସୁନାବ୍ୟା ଥିଲା । ଏହି ବାଟେ ସୈନ୍ୟ ଓ ଯୁଦ୍ଧ ସାମଗ୍ରୀ ତଥା ତୋପ କମାଣ ଆଦି ନିଆଅଣା କରୁଥିଲେ । ମହାନଦୀର ଉତ୍ପତ୍ତି ସ୍ଥଳଠାରୁ କଟକ ପର୍ଯ୍ୟନ୍ତ ମହାନଦୀ କୂଳରେ ବଡ ବଡ ବାଣିଜ୍ୟ ପେଣ୍ଠ ସହର ସବୁ ଗଢି ଉଠିଥିଲା । ଏବେ ସୁଦ୍ଧା ମହାନଦୀ କୂଳରେ ଶ୍ରୀପୁର, ରାଜିମ, ସୌରିନାରାୟଣ ପ୍ରଭୃତି ନଗର ଅଧୁନା ଛତିଶଗଡ ସହରରେ ରହିଛି । ଓଡିଶାର ପଦ୍ମପୁର, ଚିଲିକା, ସମ୍ବଲପୁର, ସୋନପୁର, ଚରଦା, ବୌଦ, କଣ୍ଟିଲୋ, କଟକ, ଆଳି ପ୍ରସିଦ୍ଧ ନଗର ଓ ଶିଳ୍ପ ବାଣିଜ୍ୟ କେନ୍ଦ୍ର ଥିଲା ।

ସୋନପୁରରୁ ତେଲନଦୀ ବାଟେ ତୋଷରା ପର୍ଯ୍ୟନ୍ତ ପଣ୍ୟ ଯାଉଥିଲା । ସୁକତେଲ ନଦୀପଥରେ ପ୍ରାଚୀନ ସୁକ୍ତିମତିପୁର ଅର୍ଥାତ୍ ଆଧୁନିକ ସକମା ଅଞ୍ଚଳ ପର୍ଯ୍ୟନ୍ତ ଜଳପଥରେ ବାଣିଜ୍ୟ କାରବାର ଚାଲୁଥିଲା । ଏପରିକି ମରହଟ୍ଟା ରାଜତ୍ୱକାଳରେ ପୁରୀ ଯାତ୍ରୀମାନେ ସମ୍ବଲପୁରରୁ କଟକ ପର୍ଯ୍ୟନ୍ତ ନୌକା ଚଢି ଯାଉଥିବାର ନଜିର ରହିଛି । ନଦୀଗୁଡିକ ଅନାବ୍ୟା ହେବା ଋତୁରେ ବଣିକମାନେ ସ୍ଥଳପଥରେ ବ୍ୟବସାୟ କରୁଥିଲେ । ଭାରବାହି ମନୁଷ୍ୟ, ଗୋରୁଗାଡି, ଘୋଡା, ଗଧ ଓ ବଳଦ ପିଠିରେ ପଣ୍ୟ ସ୍ଥାନାନ୍ତରିତ ହେଉଥିଲା । ବେଳେବେଳେ ବଣିକମାନେ ଦଶ ବାର ହଜାର ପଶୁଙ୍କୁ ଘେନି ଏକତ୍ର ଗମନାଗମନ କରୁଥିଲେ । ସେମାନଙ୍କୁ ବଞ୍ଜାରା ଦଳ କୁହାଯାଉଥିଲା । ବାଣିଜ୍ୟ ଶବ୍ଦରୁ ବଞ୍ଜାରା ଶବ୍ଦ ଆନିତ । ମୋଗଲ ଯୁଗୀୟ ପାଶ୍ଚାତ୍ୟ ପର୍ଯ୍ୟଟକମାନେ ବଙ୍ଗଳା, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶରେ ଅନେକ ବଞ୍ଜାରା ଦଳ ଦେଖିଥିବାର ବର୍ଣ୍ଣନା କରିଛନ୍ତି ।

ସଂସ୍କୃତ ସାହିତ୍ୟରେ ମଧ ଏମାନଙ୍କର ବର୍ଣ୍ଣନା ଦେଖିବାକୁ ମିଳେ । ମହାଭାରତରୁ ଜଣାଯାଏ ଯେ ଚେଦି ରାଜାମାନେ ଏ ପ୍ରକାର ବାଣିଜ୍ୟରେ ମୂଳଧନ ଖଟାଉଥିଲେ । ଦଳେ ବଣିକ ତାଙ୍କ ପକ୍ଷରୁ ଦେଶ ବିଦେଶରେ ବାଣିଜ୍ୟ କରୁଥିଲେ । ମହାଭାରତରେ ଏମାନଙ୍କୁ 'ସାର୍ଥ' ଓ ଦଳପତିଙ୍କୁ 'ସାର୍ଥବାହ' ବୋଲି ବର୍ଣ୍ଣନା କରିଛି । ବଣିକମାନେ ନିଘଞ୍ଚ ଜଙ୍ଗଲ ବାଟେ ଦଳବଦ୍ଧ ହୋଇ ଯାତ୍ରା କରୁଥିଲେ । ପଣ୍ୟ ସଙ୍ଗେ ବହୁ ମୂଲ୍ୟ ରତ୍ନ ମଧ ରହୁଥିଲା । ସ୍ଥଳ ବିଶେଷରେ ହସ୍ତି, ଅଶ୍ୱ ଓ ଯାନ ସାହାଯ୍ୟରେ ଜିନିଷ ସ୍ଥାନାନ୍ତରିଣ ହେଉଥିଲା । ପ୍ରାଚୀନ ଭାରତରେ ଅନେକ ସାର୍ଥବାହ ପଥ ସବୁଥିଲା । ସାଞ୍ଚି, ପିତ୍ତଲ ଖୋରା ଆଦି ଧାର୍ମିକ ସ୍ଥଳ ପ୍ରାଚୀନ ସାର୍ଥବାହ ପଥ ପାର୍ଶ୍ୱରେ ଗଢି ଉଠିଥିଲା ।

ମହାନଦୀ ନରାଜଠାରେ ୩ ଭାଗରେ ବିଭକ୍ତ । ପ୍ରଧାନ ଶାଖା ଦୟାର ପ୍ରଶାଖା ପ୍ରାଚୀ ବା କୁଶଭଦ୍ରା ଓ ଏହାର ପ୍ରଶାଖା ଭାର୍ଗବୀ ଗଭୀର ଓ ସୁନାବ୍ୟା ଥିଲା । ଏବେ ବାଲୁକା ରାଶିରେ ପୋତି ହୋଇ ନଦୀର ଅସ୍ତିତ୍ୱ ପର୍ଯ୍ୟନ୍ତ ନାହିଁ । ପ୍ରଧାନ ସ୍ରୋତ ଦୟା ନରାଜଠାରୁ ଚିଲିକା ପର୍ଯ୍ୟନ୍ତ ଥିଲା । ଭାର୍ଗବୀ ପୁରୀ ନିକଟରେ ସମୁଦ୍ରରେ ପଡିଥିଲା । କୁଶଭଦ୍ରା ଭୁବନେଶ୍ୱର ଦକ୍ଷିଣ ପାର୍ଶ୍ୱ ଦେଇ କୋଣାର୍କ ନିକଟରେ ସମୁଦ୍ରରେ ମିଶି ଥିଲା । ସେ ସମୟରେ ଚିଲିକା, ପୁରୀ ଓ କୋଣାର୍କ ପ୍ରଧାନ ପୋତାଶ୍ରୟ ରୂପେ ଗଢି ଉଠିଥିଲା ।

### ଓଡିଶାର ସାଧବ

'ସାର୍ଥବାହ' ଶବ୍ଦରୁ ଓଡିଶାରେ ସାଧବ ଶବ୍ଦର ସୃଷ୍ଟି ହୋଇଛି । ସାଧବମାନେ ଧନୀ ଥିଲେ । ବାଣିଜ୍ୟ କାରବାର ପାଇଁ ସେମାନଙ୍କ ପାଖରେ ବିପୁଳ ବଳ, ପୁଞ୍ଜି ଓ ସମ୍ପତ୍ତି ଥିଲା । ସେମାନେ ବ୍ୟକ୍ତିଗତ ପ୍ରଚେଷ୍ଟା ବା ସଙ୍ଘବଦ୍ଧ ଭାବରେ ଏକାଧିକ ବୋଇତ ଚଳାଉଥିଲେ । ଏମାନଙ୍କ ସମ୍ବନ୍ଧରେ ଏବେ ଅନେକ କିମ୍ବଦନ୍ତୀ ଓ କାହାଣୀ ଗଢି ଉଠିଛି । ଅଦ୍ୟାବଧି ପ୍ରଚଳିତ 'ସାଧବ ଘର' ଓ 'ସାଧବ ବୋହୂ' କଥାମାନଙ୍କର ଓଡିଆ ସମାଜରେ ବିଶିଷ୍ଟ ସ୍ଥାନ ଓ ପ୍ରତିପତି ଥିବାର ସୂଚନା ମିଳେ ।

ସାଧବମାନେ ବଙ୍ଗୋପ ସାଗରରେ ବାଣିଜ୍ୟ କାରବାର କରୁଥିଲେ । କଳିଙ୍ଗ ସାଧବମାନେ ଏହାକୁ କଳିଙ୍ଗ ସାଗର ନାମରେ

ନାମିତ କରିଥିଲେ । ପୂର୍ବଭାରତୀୟ ଦ୍ୱୀପପୁଞ୍ଜର ବାଣିଜ୍ୟରେ କଳିଙ୍ଗର ରାଜବଂଶମାନେ ମଧ୍ୟ ସଂଶ୍ଳିଷ୍ଟ ଥିବାର ଜଣାଯାଏ । ଚେଡିରାଜମାନେ ଏହି ବାଣିଜ୍ୟ ସମ୍ପର୍କରେ ଆସି ପ୍ରାଚୀ କଳିଙ୍ଗ, ଗଙ୍ଗା ରାଇଡ କଳିଙ୍ଗ ଓ ମଗ କଳିଙ୍ଗରେ ତ୍ରିକଳିଙ୍ଗ ରାଜ୍ୟ ସ୍ଥାପନ କରିଥିଲେ । ଶୈଳେନ୍ଦ୍ର ବା ଶୈଳୋଦ୍‌ଭବ ରାଜାମାନେ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜକୁ ଯାଇ ସମୁଦ୍ର ଶୈଳେନ୍ଦ୍ର ସାମ୍ରାଜ୍ୟ ସ୍ଥାପନା କରିଥିଲେ ।

ବର୍ଷସାରା ସଂଗୃହିତ ପଣ୍ୟ ସମ୍ଭାରର କାର୍ତ୍ତିକ ଅମାବାସ୍ୟା ଦୀପାବଳୀ ଦିନ ଲକ୍ଷ୍ମୀ ପୂଜା ହେଉଥିଲା, ତା'ପର ଦିନଠାରୁ କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ବୋଇତରେ ପଣ୍ୟର ସଞ୍ଚୟନ ହେଉଥିଲା । ସାଧବମାନେ କାର୍ତ୍ତିକ ପୂର୍ଣ୍ଣିମା ଦିନ 'ବୋଇତ ଯାତ୍ରା' କରୁଥିଲେ । ଉତ୍ତରା ଅନୁକୂଳ ପବନରେ ବୋଇତ ସୁବିଧାରେ ଓ ସହଜରେ ବାଲି ପ୍ରଭୃତି ଦ୍ୱୀପପୁଞ୍ଜକୁ ଯାଇପାରୁଥିଲା । ଏହି ବାଲି ଦ୍ୱୀପ ଯାତ୍ରା ଏ ପର୍ଯ୍ୟନ୍ତ ଆମ ଓଡିଆ ଜନମାନସରେ ଗଭୀର ଛାପ ଓ ରେଖାପାତ କରି ଦେଇଯାଇଛି । ଏହା ଏବେ ବାଲିଯାତ୍ରା ଉତ୍ସବ ନାମରେ ପାଳିତ ହୋଇ ଆସୁଛି । ବାଲିଯାତ୍ରାର ଅର୍ଥ ବାଣିଜ୍ୟାର୍ଥ ବାଲି ଦ୍ୱୀପକୁ ଯାତ୍ରା । ଏବେ ଓଡିଆ ସାଧବ ବୋହୂର ଆଉ ବୋଇତ ମେଲାଣ ନାହିଁ, ଖାଲି ରହିଛି କାର୍ତ୍ତିକ ପୂର୍ଣ୍ଣିମା ପାହାନ୍ତାରୁ କଦଳୀ ବାସୁଙ୍ଗା ରୂପକ କୃତ୍ରିମ ବୋଇତର ଭସାଣ ।

ଓଡିଆ ସାଧବ ପୁଅର ଏହି ବାଣିଜ୍ୟ ଯାତ୍ରା କଥା ଗ୍ରୀକ୍ ପର୍ଯ୍ୟଟକ ଟୋଲେମି ମଧ୍ୟ ଉଲ୍ଲେଖ କରିଛନ୍ତି । କାର୍ତ୍ତିକ ମାସ ଶେଷରେ ଅର୍ଥାତ୍ ଅକ୍ଟୋବର-ନଭେମ୍ବର ମାସରେ ଉତ୍ତରା ପବନ ଅନୁକୂଳ ହୁଏ । ସେତେବେଳେ ଓଡିଶା ଉପକୂଳରୁ କଳିଙ୍ଗ ସାଗରରେ ବୋଇତଗୁଡିକ ପଣ୍ୟ ସମ୍ଭାର ଘେନି ସମୁଦ୍ର ବାଣିଜ୍ୟ ନିମନ୍ତେ ପୂର୍ବ ଦ୍ୱୀପପୁଞ୍ଜକୁ ପ୍ରସ୍ଥାନ କରୁଥିଲେ । କାର୍ତ୍ତିକଠାରୁ ଚୈତ୍ର ପର୍ଯ୍ୟନ୍ତ ସେଠାରେ ବାଣିଜ୍ୟ ବିନିମୟ ଚାଲୁଥିଲା । ଫାଲ୍‌ଗୁନ, ଚୈତ୍ର ମାସରେ ଦକ୍ଷିଣ ପବନ ଆରମ୍ଭ ହେବା ସଙ୍ଗେ ସାଧବମାନେ ଗୃହାଭିମୁଖରେ ପ୍ରତ୍ୟାବର୍ତ୍ତନ କରୁଥିଲେ । ପଣାସଂକ୍ରାନ୍ତି ବେଳକୁ ବୋଇତସବୁ ପଣ୍ୟ ସମ୍ଭାର ଘେନି କଳିଙ୍ଗ ଉପକୂଳରେ ଲାଗୁଥିଲା । ବିଦେଶାଗତ ପରିଜନ ଓ ବୋଇତ ବନ୍ଦାଣ ପାଇଁ ସାଧବ ବୋହୂମାନେ ମେଷ ସଂକ୍ରାନ୍ତି ଦିନ ମଧୁର ଉତ୍ସବ ପାଳନ କରୁଥିଲେ । ଏହା ଏବେ ପଣା ସଂକ୍ରାନ୍ତି ନାମରେ ଲୋକପ୍ରିୟ ।

**କଳିଙ୍ଗର ପଣ୍ୟ ପେଟିକା**

କଳିଙ୍ଗର ସୂକ୍ଷ୍ମ ବସ୍ତ୍ରର ଚାରିଆଡେ ଖ୍ୟାତି ଥିଲା । କୌଟିଲ୍ୟ ମଧ୍ୟ ତାଙ୍କ ରଚିତ ଅର୍ଥଶାସ୍ତ୍ରରେ ଏକଥା ବର୍ଣ୍ଣନା କରିଛନ୍ତି । କୁହାଯାଏ କଳିଙ୍ଗର ସୂକ୍ଷ୍ମବସ୍ତ୍ର ହାତମୁଠା ଓ ବାଉଁଶ ନଳୀରେ ରହିପାରୁଥିଲା । କୋଶଳରେ କୋଶାବସ୍ତ୍ର ଓ କାର୍ପାସ ମଧ୍ୟ ପୃଥିବୀ ପ୍ରସିଦ୍ଧ ଥିଲା । ସମ୍ବଲପୁର କୋଶଳର ହୀରାକୁଦଠାରୁ ହୀରା, ସୁନା, ରୂପା, ପାନ୍ନା, ପଦ୍ମରାଗ, ନୀଳମଣି, ପୋଖରାଜ, ସ୍ଫଟିକ ଓ ରକ୍ତମଣି ସଂଗୃହୀତ ହୋଇ ବିଦେଶକୁ ରପ୍ତାନୀ କରାଯାଉଥିଲା । କଳିଙ୍ଗ ବନ୍ଦରମାନଙ୍କରୁ ସମ୍ବଲପୁରର ହୀରା ପାରସ୍ୟ ଗ୍ରୀସ୍ ଓ ରୋମ୍ ପର୍ଯ୍ୟନ୍ତ ରପ୍ତାନୀ ହେଉଥିବାର ଐତିହାସିକ ଜୀବନ ବର୍ଣ୍ଣନା କରିଛନ୍ତି । ପୂର୍ବ ଭାରତ ଦ୍ୱୀପପୁଞ୍ଜରୁ ଅଳେଇଚ, ମରିଚ, ଲବଙ୍ଗ, ଗୁଆ ଇତ୍ୟାଦି ଚୀନ୍‌ରୁ ରେଶମୀ ବସ୍ତ୍ର ଓ ବଙ୍ଗଦେଶରୁ ମସ୍‌ଲିନ ପ୍ରଭୃତି ଆମଦାନୀ କରାଯାଉଥିଲା ।

ଅଧୀକ୍ଷକ
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର



ସଚିବାଳୟଠାରେ ଏକ ପୁସ୍ତକ ଉନ୍ମୋଚନ ଅବସରରେ
ରାଜସ୍ୱ ମନ୍ତ୍ରୀ ଶ୍ରୀ ମନମୋହନ ସାମଲ । ୨୩.୦୯.୦୬

# ଅଭିଲେଖରେ ଓଡ଼ିଶାର ସାମୁଦ୍ରିକ ବାଣିଜ୍ୟର ସୂଚନା

ଡକ୍ଟର ସତ୍ୟଭାମା ପତି

ଓଡ଼ିଶାର ସମୁଦ୍ର ପଥରେ ବହିଃଦେଶ ସହିତ ବାଣିଜ୍ୟ ସମ୍ପର୍କ ବହୁ ପୁରାତନ । ପ୍ରାୟତଃ ଖ୍ରୀ:ପୂ: ଯୁଗରୁ ସିଂହଳ, ଜାଭା, ବାଲି ଓ ବୋର୍ଣ୍ଣିଓ ପ୍ରଭୃତି ରାଜ୍ୟ ବ୍ୟତୀତ ଚୀନ ଏବଂ ଇଜିପ୍ଟରୁ ମଧ୍ୟ ବଣିକମାନେ ସମୁଦ୍ର ପଥରେ ଭାରତ ସହିତ ସମ୍ପର୍କ ରଖି ଆସୁଥିଲେ । ଭାରତରୁ ବାଣିଜ୍ୟ ଉଦ୍ଦେଶ୍ୟରେ ପୂର୍ବ ଉପକୂଳରେ ଯେଉଁ ବନ୍ଦରଗୁଡ଼ିକ ପ୍ରାଚୀନ କାଳରୁ ସ୍ଥାପିତ ହୋଇଥିଲା, ତାହା ଅଧିକାଂଶ କ୍ଷେତ୍ରରେ ନଦୀ ମୁହାଣରେ କିମ୍ବା ଉପଯୁକ୍ତ ସମୁଦ୍ର କୂଳରେ ଉପସ୍ଥାପିତ ଥିବା ଜଣାଯାଏ । କଳିଙ୍ଗ ବଣିକମାନେ ପ୍ରାୟତଃ ମହାନଦୀ, ସୁବର୍ଣ୍ଣରେଖା, ଋଷିକୁଲ୍ୟା, ମହେନ୍ଦ୍ରତନୟା ଏବଂ ଋଷିକୁଲ୍ୟା ମୁହାଣରେ ସ୍ଥାପିତ ବନ୍ଦର ମଧ୍ୟ ଦେଇ ଜଳଯାତ୍ରା କରୁଥିଲେ ।

ଜାଭା, ବାଲି ଓ ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପମାନଙ୍କର ଆବିଷ୍କୃତ ଲିପିମାନଙ୍କରୁ ଅନୁମେୟ ହୁଏ ଯେ କଳିଙ୍ଗ ତଥା ପାରିପାର୍ଶ୍ୱିକ ଅଂଚଳର ପ୍ରାଚୀନ ରାଜବଂଶ ସେହି ଦ୍ୱୀପଗୁଡ଼ିକରେ ରାଜଧାନୀ ସ୍ଥାପନ କରି ପୂର୍ବ ଭାରତୀୟ ବନ୍ଦର ମଧ୍ୟ ଦେଇ ପଣ୍ୟ ଦ୍ରବ୍ୟ ସଂଗ୍ରହ କରିବା ସହ ବ୍ରାହ୍ମଣ ପଣ୍ଡିତମାନଙ୍କୁ ମଧ୍ୟ ନିମନ୍ତ୍ରଣ କରି ନେଉଥିଲେ । ସେହି ରାଜବଂଶର ରାଜାମାନଙ୍କ ନାମ ତଥା ସେମାନଙ୍କ ସଂସ୍କୃତି, ଧର୍ମ ତଥା ଭାଷା, ଆଚାର ବ୍ୟବହାର କଳିଙ୍ଗ ଉପକୂଳ ମଧ୍ୟ ଦେଇ କରାଯାଉଥିଲା । ଶୈଳୋଦ୍ଭବ ବଂଶୀୟ ରାଜା ମାଧବ ବର୍ମା ତାଙ୍କର ଅଭିଲେଖରେ ଏହାର ସମ୍ୟକ୍ ସୂଚନା ପ୍ରଦାନ କରିଛନ୍ତି ।

ଅତୀତ ଓଡ଼ିଶାର ସୁଦୂର ବିସ୍ତାରିତ ପୂର୍ବ ଉପକୂଳ ମଧ୍ୟଯୁଗରେ କୈବର୍ତ୍ତମାନଙ୍କର ଶାସନାଧୀନ ଥିଲା ଏବଂ ସେଠାରୁ ସୁଦୂର ଦ୍ୱୀପମାନଙ୍କରେ ବାଣିଜ୍ୟ ବିସ୍ତାର କରାଯାଇଥିଲା । ତାମ୍ରଲିପ୍ତି ପୂର୍ବାଞ୍ଚଳର ପ୍ରଧାନ ବନ୍ଦର ଥିବାବେଳେ ଚିଲିକା ହ୍ରଦ ଆଉ ଏକ ମୁଖ୍ୟ ବନ୍ଦର ରୂପେ ବ୍ୟବହୃତ ହେଉଥିଲା । ସେଠାରୁ ସମୁଦ୍ର ପଥରେ ବାଣିଜ୍ୟ ଯାତ୍ରା ପାଇଁ ବଣିକମାନେ ଚିଲିକା କୂଳରେ ଉପନୀତ ହେଉଥିଲେ । ଆଧୁନିକ ରମ୍ଭା ଏବଂ ବ୍ରହ୍ମଗିରି ଦୁଇଟି ବନ୍ଦରରେ ପରିଣତ ହୋଇଥିଲା । ଭାରତୀୟ ସୌଦାଗରମାନେ ଇଉରୋପୀୟଙ୍କ ଆଗମନ ପୂର୍ବରୁ ଓଡ଼ିଶା ଉପକୂଳସ୍ଥ ହୁଗୁଳି, ପିପିଲି ଓ ବାଲେଶ୍ୱର ଆଦି ବାଣିଜ୍ୟ କେନ୍ଦ୍ରରୁ ମାଳୟ, ଇଣ୍ଡୋନେସିଆ ଆଦି ଦେଶ ସହିତ ସାମୁଦ୍ରିକ ବାଣିଜ୍ୟ ଚଳାଇଥିଲେ । ପଞ୍ଚଦଶ ଶତାବ୍ଦୀରେ ଓଡ଼ିଶା ବନ୍ଦରମାନଙ୍କରୁ ମାଲକ୍କାକୁ ବସ୍ତ୍ରାଦି ଦ୍ରବ୍ୟମାନ ରପ୍ତାନୀ ହେଉଥିଲା । ଷୋଡ଼ଶ ଶତାବ୍ଦୀ ବେଳକୁ ବାଣିଜ୍ୟ କାରବାର ମଧ୍ୟ ପ୍ରାଚ୍ୟ ଦେଶର ଲୋହିତ ସାଗର ଉପକୂଳସ୍ଥ ଆଡେନ୍ ଓ ଜେଡ଼ା ବନ୍ଦର ବ୍ୟତୀତ ବନ୍ତାମ, ପେଗୁ, ତେନାସରିମ ଓ ଆଚିନ ଆଦି ବନ୍ଦର ସହିତ ସମ୍ପର୍କ ସ୍ଥାପନ କରିପାରିଥିଲା । ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ଇଉରୋପୀୟ ବଣିକମାନେ ଓଡ଼ିଶା ଉପକୂଳ ସହିତ ପରିଚିତ ହେଲେ ଏବଂ ପରେ ପରେ ବାଣିଜ୍ୟ କାରବାରରେ ଲିପ୍ତ ରହିଲେ । ପର୍ତ୍ତୁଗୀଜ, ଓଲନ୍ଦାଜ, ଦୀନାମାର ଏବଂ ଫରାସୀ ବଣିକ କମ୍ପାନୀଙ୍କର ବାଣିଜ୍ୟିକ ସଂସ୍ଥାମାନ ଓଡ଼ିଶା ଉପକୂଳରେ ଗଢ଼ି ଉଠିଥିଲା କିନ୍ତୁ ବ୍ରିଟିଶ ଇଷ୍ଟଇଣ୍ଡିଆ କମ୍ପାନୀ ଓଡ଼ିଶାର ବାଲେଶ୍ୱର ଓ ପିପିଲି ବନ୍ଦର ସହିତ ସମ୍ପର୍କ ସ୍ଥାପନ କରି ବାଣିଜ୍ୟିକ କାରବାରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କଲା ।

ବାଲେଶ୍ୱର ଜିଲ୍ଲାର ପଞ୍ଚାଅଶୀ ମାଇଲ ଦୀର୍ଘ ଉପକୂଳ ରେଖା ମଧ୍ୟରେ ସର୍ବମୋଟ ସାତଟି ବନ୍ଦର ଅବସ୍ଥିତ । ସେଗୁଡ଼ିକ ହେଲା ସୁବର୍ଣ୍ଣରେଖା (ପିପିଲି), ସାରଥା, ଛନୁୟା, ବାଲେଶ୍ୱର, ଲଇଚନପୁର, ଚୁଡ଼ାମନ୍ ଏବଂ ଧାମରା । ଓଡ଼ିଶାର ମରହଟ୍ଟା ରାଜତ୍ୱ ବେଳକୁ ପିପିଲିଠାରୁ ଗଂଜାମ ସୀମାରେଖାଠାରେ ଅବସ୍ଥିତ ମାଲୁଦ ପର୍ଯ୍ୟନ୍ତ ଦୀର୍ଘ ୨୦୦ ମାଇଲ୍ ବିସ୍ତୃତ ଉପକୂଳ ବାଣିଜ୍ୟ କାରବାରରେ ଲିପ୍ତ ଥିଲା । ବାଣିଜ୍ୟିକ ବନ୍ଦରମାନଙ୍କ ମଧ୍ୟରୁ ବୁଢ଼ାବଳଙ୍ଗ ନଦୀ ମୁହାଣସ୍ଥ ବାଲେଶ୍ୱର, ସୁବର୍ଣ୍ଣରେଖାର ପିପିଲି ଓ ପଟୁଆ ନଦୀ ମୁହାଣସ୍ଥ ହରିଶପୁର ବନ୍ଦରଗୁଡ଼ିକ ଉଲ୍ଲେଖନୀୟ । ସରକାରୀ ଜାହାଜ, ମହାଜନୀ ଜାହାଜ ଓ ବିଦେଶୀ ବଣିକଙ୍କ ଜାହାଜ ଉକ୍ତ ବନ୍ଦରରେ ମାଲପତ୍ର ନେବା ଆଣିବା କରୁଥିଲେ । ଥୋମାସ ବୋଉରିଙ୍କ ମତରେ ବାଲେଶ୍ୱର ଏବଂ ପିପିଲି ବନ୍ଦରରୁ ବାର୍ଷିକ ୨୦ଟି ପୂର୍ଣ୍ଣ ଜାହାଜ କାରବାର ପାଇଁ ସିଂହଳ, ତେନାସରିମ ଏବଂ ମାଲଦୀଭ ଦୀପପୁଞ୍ଜକୁ ଯାଇ ହାତୀ, କଉଡ଼ି ଇତ୍ୟାଦି ଏହି ରାଜ୍ୟକୁ ଆଣୁଥିଲେ । ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରୁ ଓଲନ୍ଦାଜ, ଦୀନାମାର ଓ ଇଂରେଜ ବଣିକମାନେ ଏହି ବନ୍ଦରରୁ ପ୍ରଭୁତ ପରିମାଣର ଲୁଣ କର ଆଦାୟ କରୁଥିଲେ । କିନ୍ତୁ ଊନବିଂଶ ଶତାବ୍ଦୀର ତୃତୀୟ

ଦଶକରେ ଏହି ବନ୍ଦର ସମ୍ପୂର୍ଣ୍ଣ ଅନୁପଯୁକ୍ତ ଓ ଅଦରକାରୀ ହୋଇପଡ଼ିଲା ।

ଓଡ଼ିଶା ଉପକୂଳରେ ଅନେକଗୁଡ଼ିଏ ବନ୍ଦର ଥିବାରୁ ଏକ ବନ୍ଦରରୁ ଆଉ ଏକ ବନ୍ଦରକୁ ବାଣିଜ୍ୟ କାରବାର ସମୁଦ୍ର ପଥରେ ସୁରୁଖୁରୁରେ ହୋଇପାରୁଥିଲା । ଏଥିଲାଗି ଅଧିକାଂଶ ସମୟରେ ପୋତଗୁଡ଼ିକ ଜିନିଷପତ୍ର ନେବା ଆଣିବା କାର୍ଯ୍ୟରେ ନିୟୋଜିତ ହେଉଥିଲା । ଆହୁରି ମଧ୍ୟ ଓଡ଼ିଶା ଉପକୂଳସ୍ଥ ବନ୍ଦରଗୁଡ଼ିକ ଭାରତର ପୂର୍ବ ଏବଂ ପଶ୍ଚିମ ଉପକୂଳବର୍ତ୍ତୀ ଅନ୍ୟାନ୍ୟ ବନ୍ଦର ସହିତ ସାମୁଦ୍ରିକ ବାଣିଜ୍ୟ କାରବାର ସ୍ଥାପନ କରିଥିଲା । ବାଲେଶ୍ୱର ବନ୍ଦରରୁ ମାନ୍ଦ୍ରାଜ ବନ୍ଦର ଓ ପୁଲିକୋଟ୍ ବନ୍ଦରକୁ ତୂଳା, ଲୁଣ ଓ ଚାଉଳ ଇତ୍ୟାଦି ରପ୍ତାନୀ ହେଉଥିଲା । ଏସବୁ ସତ୍ତ୍ୱେ ପ୍ରାଚୀନ ଓଡ଼ିଶାର ବାଣିଜ୍ୟିକ ସମୃଦ୍ଧି କ୍ରମଶଃ ଅବନତି ଆଡ଼କୁ ଗତି କରିଥିଲା । ସପ୍ତଦଶ ଶତାବ୍ଦୀରେ ଭାରତୀୟ ବଣିକମାନେ ଇଂରେଜ କମ୍ପାନୀର ସୁରକ୍ଷା ବଳୟ ମଧ୍ୟରେ ରହିଥିଲେ ସୁଦ୍ଧା ଓଡ଼ିଶା ବାଲେଶ୍ୱର ଓ ପିପିଲି କାଳକ୍ରମେ ବାଣିଜ୍ୟିକ ସମୃଦ୍ଧି ଅନୁପଯୋଗୀ ହୋଇଥିଲା । ଊନବିଂଶ ଶତାବ୍ଦୀର ଆରମ୍ଭ ଏବଂ ମଧ୍ୟଭାଗ ବେଳକୁ ଓଡ଼ିଶାର ଅଧିକାଂଶ ବନ୍ଦର ସାମୁଦ୍ରିକ ବାଣିଜ୍ୟ ପାଇଁ ପ୍ରାୟ ଅନୁପଯୁକ୍ତ ହୋଇଯାଇଥିଲା । ଯେଉଁ କେତେକ ସାମାନ୍ୟ କାରବାର କରୁଥିଲେ, ସେଗୁଡ଼ିକର ପ୍ରାଧାନ୍ୟ କ୍ରମଶଃ ହ୍ରାସ ପାଇବାରେ ଲାଗିଲା । କେବଳ ନାମକୁ ମାତ୍ର ଚିଲିକାରୁ ଲୁଣ ମରାଯାଇ ଲୁଣ ମହାଜନମାନଙ୍କ ଦ୍ୱାରା କଲିକତା ଓ ସୁଲୁକିଆକୁ ରପ୍ତାନୀ ହେଉଥିଲା । ତଦନୁରୂପ ସାମାନ୍ୟ ବାଣିଜ୍ୟ କାରବାର ହେଉଥିଲା ଧାମରା ଓ ଚୂଡ଼ାମଣି ବନ୍ଦରରେ । ଏହି ବନ୍ଦରଗୁଡ଼ିକ ପୁରୀ, ମସୁଲୀପଟ୍ଟମ ଓ କଲିକତା ସହିତ ସମ୍ପର୍କ ରଖିଥିଲେ । ପୋତ ସାହାଯ୍ୟରେ ମାଲପତ୍ର ପରିବହନ ଏବଂ ନାବିକ ଓ ଯାତ୍ରୀମାନଙ୍କର ଗମନାଗମନ ହେଉଥିଲା ।

ଭାରତର ପୂର୍ବ, ପଶ୍ଚିମ ଓ ଦକ୍ଷିଣ ଉପକୂଳରେ ବଡ଼ବଡ଼ ଜାହାଜ ନିର୍ମିତ ହେଉଥିଲା । ଓଡ଼ିଶାର ଉପକୂଳବର୍ତ୍ତୀ ବନ୍ଦରମାନଙ୍କରେ ବଡ଼ ବଡ଼ ଜାହାଜର ଆବଶ୍ୟକତା ଥିବାରୁ ବାଲେଶ୍ୱର ବନ୍ଦରରେ ଜାହାଜ ନିର୍ମାଣ ଓ ମରାମତି କାର୍ଯ୍ୟ ସମ୍ପାଦିତ ହେଉଥିଲା । ସପ୍ତଦଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ବାଲେଶ୍ୱର ବ୍ୟତୀତ କନିକା, ହରିଶପୁର ପିପିଲି ଆଦି ବନ୍ଦର ମୁହଁର ଜାହାଜ ଓ ନୌକା ତିଆରି ଏବଂ ମରାମତି କାର୍ଯ୍ୟପାଇଁ ସୁନାମ ଅର୍ଜନ କରିଥିଲା । ଜାହାଜ ମରାମତି ଓ ନୌକା ନିର୍ମାଣ ଶିଳ୍ପ ଊନବିଂଶ ଶତାବ୍ଦୀରେ ମଧ୍ୟ ପରିଲକ୍ଷିତ ହେଉଥିଲା । କିନ୍ତୁ ୧୮୭୧ ମସିହା ବେଳକୁ ଷ୍ଟିମର ପ୍ରଚଳନ ହେତୁ ସେସବୁର ଚାହିଦା କ୍ରମଶଃ କମିବାରେ ଲାଗିଲା । କେବଳ ସରକାରୀ ଚାହିଦା ଅନୁଯାୟୀ କେଇଖଣ୍ଡ ନକ୍ସା ମୁତାବକ ନୌକା ତିଆରି କରାଯାଉଥିଲା । ବିଂଶ ଶତାବ୍ଦୀର ପ୍ରାରମ୍ଭରେ କଲିକତାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ରେଳ ଚଳାଚଳର ସୁବିଧା ହେବାରୁ ସମୁଦ୍ର ପଥରେ ଯାତ୍ରା ଏବଂ ବାଣିଜ୍ୟ କାରବାର କ୍ୱଚିତ ପରିଲକ୍ଷିତ ହୁଏ ।

ଓଡ଼ିଶା ରାଜ୍ୟ ଅଭିଲେଖାଗାରରେ ଗଚ୍ଛିତ ଏବଂ ସଂରକ୍ଷିତ ସାମୂହିକ ବାଣିଜ୍ୟ ସମ୍ବନ୍ଧୀୟ ଅଭିଲେଖଗୁଡ଼ିକରୁ ଯତ୍ ସାମାନ୍ୟ ଆଭାସ ମିଳେ । ବନ୍ଦରଗୁଡ଼ିକ ପ୍ରାକୃତିକ ଘଟଣାରୁ ତଥା ଇଂରେଜ ସରକାରଙ୍କ ଉଦାସୀନତାରୁ ଅନୁପଯୁକ୍ତ ହେବାକୁ ଲାଗିଥିଲେ ହେଁ ସେଗୁଡ଼ିକର ରକ୍ଷଣାବେକ୍ଷଣ ଓ ପରିଚାଳନା ନିମିତ୍ତ 'Marine Establishment Committee' ସ୍ଥାପନ କରାଯାଇଥିଲା । ଏହା ସହିତ ମାନ୍ଦ୍ରାଜ ଉପକୂଳ ଓ ପଶ୍ଚିମ ଉପକୂଳ ଢାଞ୍ଚା ଅନୁଯାୟୀ ୧୮୨୦ ମସିହାରେ 'Beach Establishment' ପ୍ରତିଷ୍ଠା କରାଯାଇଥିଲା । ଏହି ଦୁଇ ସଂସ୍ଥା ବନ୍ଦର ପରିଚାଳନା ନିମିତ୍ତ କର୍ମଚାରୀ ନିଯୁକ୍ତି ଓ ତତ୍‌ସମ୍ବନ୍ଧୀୟ ଖର୍ଚ୍ଚର ହିସାବ ରଖୁଥିଲେ । ଆନ୍ତଃ ବନ୍ଦର ଗମନାଗମନ ପାଇଁ ଦରକାରୀ ଉପଯୁକ୍ତ ନୌକା ଇତ୍ୟାଦିର ନିର୍ମାଣ କାର୍ଯ୍ୟ ହାତକୁ ନେଉଥିଲେ । ମାଣିକପାଟଣା ଓ ବାଲେଶ୍ୱର ବନ୍ଦରରୁ ଲୁଣ ରପ୍ତାନୀ କାର୍ଯ୍ୟରେ ମହାଜନ, କଣ୍ଟ୍ରାକ୍ଟର କର୍ମଚାରୀଙ୍କ ସହିତ ଯୋଗସୂତ୍ର ସ୍ଥାପନ କରୁଥିଲା । ପ୍ରତିବନ୍ଦରରେ ଜଣେ ଲେଖାଏଁ Master Attendant ଏବଂ Beach Establishment ପାଇଁ ଜଣେ Beach Master ନିଯୁକ୍ତି କରାଯାଇଥିଲା । ବନ୍ଦରଗୁଡ଼ିକର ପରିଚାଳନା ନିମିତ୍ତ Post Regulation ତିଆରି ହୋଇଥିଲା । ବନ୍ଦରରେ ଯାତ୍ରୀ ଓ ମାଲପତ୍ର ପାଇଁ ମହାସୁଲ ଆଦାୟ କରାଯାଉଥିଲା । ଯେଉଁ ସ୍ଥଳେ ବନ୍ଦରଗୁଡ଼ିକ ଲାଭଦାୟକ ହେଉନଥିଲା ସେଠାରୁ Master Attendant ଏବଂ ଅନ୍ୟାନ୍ୟ କର୍ମଚାରୀଙ୍କୁ କାଢ଼ି ନିଆଯାଉଥିଲା । ଉଦାହରଣ ସ୍ୱରୂପ ମାଣିକପାଟଣା ବନ୍ଦର ୧୮୨୯ ମସିହାଠାରୁ ସମ୍ପୂର୍ଣ୍ଣ ରୂପେ ଅକ୍ଷମ ହୋଇଯାଇଥିଲା । ଏପରିକି ଗଞ୍ଜାମରୁ ହୁଗୁଳି ପର୍ଯ୍ୟନ୍ତ ବିସ୍ତୃତ Beach Establishment ଦୀର୍ଘ ୧୦ ବର୍ଷ କାର୍ଯ୍ୟକ୍ଷମ ହେଲାପରେ ଏହି ସଂସ୍ଥାର ଅନାବଶ୍ୟକତା ଦୃଷ୍ଟିରୁ ୧୮୩୦ ମସିହା ବେଳକୁ ଏହାକୁ ବନ୍ଦ କରି ଦିଆଯାଇଥିଲା ।

ଏସବୁ ସତ୍ତ୍ୱେ ରାଜ୍ୟ ଅଭିଲେଖାଗାରରୁ ମିଳିଥିବା ଦଲିଲରୁ ଜଣାଯାଏ ଯେ ଊନବିଂଶ ଶତାବ୍ଦୀରେ ବନ୍ଦରଗୁଡ଼ିକ ଦେଇ ଜାହାଜ ବା ପୋତ ଚଳାଚଳର ସ୍ୱଳ୍ପ ସୂଚନା ଥିଲାବେଳେ ନଦୀ ବନ୍ଦରରୁ ନୌକା ସାହାଯ୍ୟରେ ଜିନିଷ ଆମଦାନୀ ରପ୍ତାନୀ ହେଉଥିଲା । ଏତଦ୍‌ବ୍ୟତୀତ 'ଫଏଣ୍ଟ ପାମେରା' ବତୀଘରର ଉଲ୍ଲେଖ, ସେଠାରେ ଥିବା କର୍ମଚାରୀଙ୍କ କାର୍ଯ୍ୟସୂଚୀର ବିବରଣୀରୁ ଜାହାଜ ବା ପୋତ ଚଳାଚଳର ସମ୍ୟକ ସୂଚନା ମିଳେ । କଲିକତାରୁ ଦୂର ବନ୍ଦରକୁ ଯାଉଥିବା ଜାହାଜ ସମୟେ ସମୟେ ସାମୁଦ୍ରିକ ଝଡ଼ର ସମ୍ମୁଖୀନ ହୋଇ କନିକା ଅଥବା କୋଣାର୍କ ନିକଟବର୍ତ୍ତୀ ସମୁଦ୍ର ଉପକୂଳରେ ଦୁର୍ଘଟଣା ଗ୍ରସ୍ତ ହେଉଥିଲା । ଇଂରେଜ ସରକାର Master Attendantଙ୍କ ଦ୍ୱାରା ଜାହାଜର ନାବିକ ଓ ଜିନିଷପତ୍ରର ଉଦ୍ଧାର କାର୍ଯ୍ୟ କରାଉଥିଲେ । ଏହି ଉଦ୍ଧାର କରାଯାଉଥିବା ଜିନିଷରୁ ଜଣାପଡ଼େ, କେଉଁ ପଦାର୍ଥ ଜଳପଥରେ କେଉଁଠାକୁ ରପ୍ତାନୀ ହେଉଥିଲା ।

ବିଦେଶୀ ବଣିକମାନଙ୍କର ବାଣିଜ୍ୟ ସମ୍ବନ୍ଧୀୟ ଚିଠିପତ୍ର, ହୁକୁମ୍‌ନାମା, ଦସ୍ତଖତ ଇତ୍ୟାଦି ଅନେକ ହସ୍ତଲେଖା ଏବଂ ଛାପା ଦଲିଲ୍, Factory Records ଆକାରର ଗଚ୍ଛିତ ହୋଇ ରହିଥିଲା । ପରବର୍ତ୍ତୀ ସମୟରେ ଏହି ଅଭିଲେଖଗୁଡ଼ିକ ମୂଲ୍ୟବାନ ଐତିହାସିକ ତଥ୍ୟ ଆକାରରେ ପରିଚିତ ଏବଂ ପରିଗଣିତ ହେଲା । ଏସବୁ ତଥ୍ୟ ଅନୁଶୀଳନ କଲେ ଓଡ଼ିଶାର ସାମୁଦ୍ରିକ ବାଣିଜ୍ୟର ମହାନ୍ ଐତିହ୍ୟ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ତିଷ୍ଠି ରହିଥିବା ଅନୁମିତ ହୁଏ । ଇଂରେଜମାନଙ୍କ ଓଡ଼ିଶା ଅଧିକାର ପରେ ଉକ୍ତ ବନ୍ଦରଗୁଡ଼ିକ ଲୁପ୍ତ ପ୍ରାୟ ହୋଇ କେତେକ ନାମକୁ ମାତ୍ର ତିଷ୍ଠି ରହିଥିଲା ଏବଂ ସେଗୁଡ଼ିକ କେବଳ ଇଂରେଜ ସରକାରଙ୍କ ସରକାରୀ କାର୍ଯ୍ୟରେ ନିୟୋଜିତ ହେଉଥିଲା । ପରବର୍ତ୍ତୀ ସମୟରେ ସୀମିତ ବାଣିଜ୍ୟ କାରବାର ନିମିତ୍ତ ଚାନ୍ଦବାଲି ଏବଂ 'ଫଲସ୍ ପଏଣ୍ଟ' ପ୍ରାଧାନ୍ୟ ଲାଭ କଲା । ଇଂରେଜ ବଣିକମାନଙ୍କ ସ୍ୱାର୍ଥ ସାଧନ ହେବା ସହ ପ୍ରାଚୀନ ମୁଖ୍ୟ ବନ୍ଦରଗୁଡ଼ିକ ବିସ୍ମୃତି ଗର୍ଭରେ ଲୀନ ହୋଇଗଲା ।

ଇତିହାସ ବିଭାଗ
ରେଭେନ୍‌ସା କଲେଜ, କଟକ

# ଇ-ଗଭର୍ଣ୍ଣାନସ୍ ପ୍ରଚଳନ କ୍ଷେତ୍ରରେ ଓ.ଏମ୍.ସି.ର ରେକର୍ଡ଼

ଇ-ଗଭର୍ଣ୍ଣାନ୍‌ସ ପ୍ରଚଳନ କ୍ଷେତ୍ରରେ ଓଡ଼ିଶା ଖଣି ନିଗମ (ଓ.ଏମ୍.ସି.) ରେକର୍ଡ଼ ପ୍ରତିଷ୍ଠା କରିଛି । ଦେଶର ଏକ ଶ୍ରେଷ୍ଠ ନିଗମ ଭାବେ ଓ.ଏମ୍.ସି. ତା'ର କର୍ମଚାରୀ ଏବଂ କାର୍ଯ୍ୟାବଳୀ ନିମନ୍ତେ ଇଣ୍ଟରପ୍ରାଇଜ ରିସୋର୍ସ ପ୍ଲାନିଂ (ଇ.ଆର୍.ପି.)ର ତିନୋଟି ମୋଡୁଲ ପ୍ରଚଳନ କରିଛି । ଏହି କାର୍ଯ୍ୟକ୍ରମ ଚତୁର୍ଥ ପର୍ଯ୍ୟାୟକୁ ଇସ୍ପାତ ଓ ଖଣି ବିଭାଗର ଶାସନ ସଚିବ ତଥା ଓ.ଏମ୍.ସି. ଅଧ୍ୟକ୍ଷ ଶ୍ରୀ ଏଲ୍.ଏନ୍. ଗୁପ୍ତା ଉଦ୍‌ଘାଟନ କରିଛନ୍ତି । ଓ.ଏମ୍.ସି. ପକ୍ଷରୁ ଏହି ଅବସରରେ ଅନୁଷ୍ଠିତ ସମାରୋହରେ ସୂଚନା ପ୍ରଯୁକ୍ତି ବିଭାଗର ଶାସନ ସଚିବ ସୁରେନ୍ଦ୍ରନାଥ ତ୍ରିପାଠୀ, ଓକାକ୍‌ର ମୁଖ୍ୟ କାର୍ଯ୍ୟ ନିର୍ବାହୀ ବିଶାଳ ଦେବ ଏବଂ ଓ.ଏମ୍.ସି.ର ପରିଚାଳନା ନିର୍ଦ୍ଦେଶକ ସଂଜୀବ ଚୋପ୍ରା ଉପସ୍ଥିତ ଥିଲେ । କର୍ମଚାରୀଙ୍କ ପାଇଁ ନିଜସ୍ୱ ସେବା ବା ଇ.ଏସ୍.ଏସ୍. ନାମରେ ଯୋଜନା ଆରମ୍ଭ ହୋଇଥିବା ବେଳେ ବିଭିନ୍ନ କାର୍ଯ୍ୟାବଳୀ ନିମନ୍ତେ ୱାର୍କଫ୍ଲୋ ଆଣ୍ଡ ପର୍ସନାଲ ଡେଭଲପ୍‌ମେଣ୍ଟ (ପି.ଡି.) ଯୋଜନା ପ୍ରଚଳନ କରାଯାଇଛି । ଇ.ଏସ୍.ଏସ୍. ମାଧ୍ୟମରେ କର୍ମଚାରୀମାନେ ତାଙ୍କର ସମସ୍ତ ଚାକିରିଗତ ସୂଚନା ଇଣ୍ଟରନେଟ୍‌ରେ ପାଇପାରିବେ । ଛୁଟି ପାଇଁ ଦରଖାସ୍ତ କରିବା, ଋଣ ଆବଶ୍ୟକ କରିବା, ଆୟକର ସଂପର୍କିତ ତଥ୍ୟ ଜାଣିବା, ଏପରିକି ଚରିତ୍ର ପଂଜିକା ସଂପର୍କରେ ମଧ୍ୟ କର୍ମଚାରୀମାନେ ସହଜରେ କମ୍ପ୍ୟୁଟରରୁ ସମସ୍ତ ତଥ୍ୟ ପାଇପାରିବେ । କମ୍ପ୍ୟୁଟର ମାଧ୍ୟମରେ ଓ.ଏମ୍.ସି. ଅଧିକାରୀଙ୍କଠାରୁ ଛୁଟି ଓ ଋଣ ସଂପର୍କିତ ଦରଖାସ୍ତ ଉପରେ କର୍ମଚାରୀମାନେ ଅନୁମୋଦନ ପାଇପାରିବେ । ସେହିପରି ପି.ଡି. ଯୋଜନାରେ ସମସ୍ତ ଯୋଜନା ଓ ତାଲିକା ସଂପର୍କିତ ତଥ୍ୟ ମିଳିପାରିବ । ଏହି ବ୍ୟବସ୍ଥା ଦ୍ୱାରା କର୍ମଚାରୀଙ୍କ ଉପରୁ କାମ ବୋଝ ମଧ୍ୟ ହ୍ରାସ ପାଇବ ।

ଓ.ଏମ୍.ସି. ମୁଖ୍ୟ କାର୍ଯ୍ୟାଳୟରେ ବାୟୋମେଟ୍ରିକ୍ ଭିତ୍ତିକ ଉପସ୍ଥାପନ ରେକର୍ଡ଼ ବ୍ୟବସ୍ଥା କରାଯାଇଛି । ଏହାଦ୍ୱାରା ପ୍ରତ୍ୟେକ କର୍ମଚାରୀଙ୍କ ଦୈନିକ ଉପସ୍ଥାନ ଓ ସମୟ ରେକର୍ଡ଼ ହୋଇ ରହିପାରିବ । କର୍ମଚାରୀଙ୍କ ଅଂଗୁଳି ଛାପ ଦ୍ୱାରା ଏହି ରେକର୍ଡ଼ ହେବ । ମାସ ଶେଷରେ ଏହି ରେକର୍ଡ଼କୁ ଆଧାର କରି ଉପସ୍ଥାନ ହିସାବ କରାଯିବ । ଫଳତଃ ଏ ସଂପର୍କିତ ଅଯଥା ବିଳମ୍ବକୁ ଦୂର କରାଯାଇପାରିବ । ସୂଚନାଯୋଗ୍ୟ ଯେ, ଇ.ଏସ୍.ଏସ୍. ଷ୍ଟେସନ ଏବଂ ଇ.ଆର୍.ପି. ତଦାରଖ ୟୁନିଟ୍‌କୁ ଓ ଏମ୍.ସି. ସ୍ପନ୍ଦନ ହଲ ନାମ ଦେଇଛି । ଉଦ୍‌ଘାଟନୀ ଉତ୍ସବ ଆସରରେ ଇ.ଆର୍.ପି. (ଏଚ୍.ଆର୍.) ଟିମ୍ ପକ୍ଷରୁ ଏହି ସମସ୍ତ ବ୍ୟବସ୍ଥାର କାର୍ଯ୍ୟକାରିତା ଉପରେ ଏକ ପ୍ରଦର୍ଶନ କରାଯାଇଥିଲା । ଏହି ବ୍ୟବସ୍ଥା ଓ.ଏମ୍.ସି.ର କାର୍ଯ୍ୟଧାରାକୁ ଅଧିକ ଦକ୍ଷ କରିବ ବୋଲି ଆଶା ପ୍ରକଟ କରାଯାଇଛି ।

# ବୋଇତ ବନ୍ଦାଣ ଓ କଟକର ବାଲିଯାତ୍ରା

ଶ୍ରୀନିବାସ ଆଚାର୍ଯ୍ୟ

**ପ୍ରା**ଚୀନ ଉତ୍କଳର କଳା, ସଂସ୍କୃତି, ପରମ୍ପରା, ନୌବାଣିଜ୍ୟ, ସ୍ଥାପତ୍ୟ, ଭାସ୍କର୍ଯ୍ୟ ତଥା ଆଧ୍ୟାତ୍ମିକ ଭାବଧାରା ପାଇଁ ଭାରତ କାହିଁକି ସମଗ୍ର ବିଶ୍ୱ ଇତିହାସରେ ଓଡ଼ିଆ ଜାତି ଶୀର୍ଷ ସ୍ଥାନ ମଣ୍ଡନ କରିଛି । ଏହିସବୁ ନିପୁଣ ଗୁଣ ଦକ୍ଷତାର ପରିଚୟ ଦିଏ ଓଡ଼ିଆ ପୁଅର ବଳିଷ୍ଠ ବୀରତ୍ୱ, ବିପୁଳ ସାହସିକତା, ନିଷ୍ଠାପର କର୍ତ୍ତବ୍ୟ, ଅକ୍ଳାନ୍ତ ପରିଶ୍ରମ, ଅସୀମ ତ୍ୟାଗ ଓ ସାଧନା ତଥା ଅଟଳ ଆତ୍ମବିଶ୍ୱାସ । ଦିନ ଥିଲା, ଓଡ଼ିଆ ପୁଅ ସମଗ୍ର ଭାରତରେ ଥିବା ଜାତିମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲା । ଏହି ପ୍ରଗତି ପଥର ଚିର ସାଥୀ ଥିଲା ଅତୀତର ରାଜା ମହାରାଜାମାନଙ୍କର ରାଜତ୍ୱ, ବୀର ଯୋଦ୍ଧାମାନଙ୍କର ସାହସିକତା ଓ ବୀରତ୍ୱ, ସାଧବପୁଅମାନଙ୍କର ଦରିଆପାରିର ନୌବାଣିଜ୍ୟ । ସର୍ବୋପରି, ଓଡ଼ିଶାର ବଡ଼ ଠାକୁର ଶ୍ରୀଜଗନ୍ନାଥଙ୍କର ଶୁଭାଶୀର୍ବାଦ ବଳରେ ପ୍ରାଚୀନ ଉତ୍କଳର ଯଶ, ଟେକ ଓ ସମ୍ମାନ ବିଶ୍ୱ ପ୍ରସିଦ୍ଧି ଲାଭ କରିଥିଲା । ଏଥିପାଇଁ ଆଜିର ଓଡ଼ିଆ ଜାତି ଗର୍ବିତ ଓ ଗୌରବାନ୍ୱିତ ।

ସମୟର କ୍ରୂର କରାଳ ଚକ୍ରରେ ବିଭିନ୍ନ ନାମରେ ଆଧାରିତ ପ୍ରାଚୀନ ଉତ୍କଳ ଅପାରଗ ରାଜାମାନଙ୍କ ଦ୍ୱାରା ଶାସିତ, ଭୂଖଣ୍ଡ ପରିସୀମାର ସଙ୍କୋଚନ ଓ ବନ୍ୟା, ବାତ୍ୟା, ଦୁର୍ଭିକ୍ଷ, ମରୁଡ଼ି ଇତ୍ୟାଦି ପ୍ରାକୃତିକ ବିପଦ ଦ୍ୱାରା ଆକ୍ରାନ୍ତ ହୋଇମଧ ତା'ର ପ୍ରଗତିପଥରେ ଅଗ୍ରଗତି କରିପାରିଥିଲା । ଏଥିପାଇଁ ଉତ୍କଳର ବୀର ଯୋଦ୍ଧାମାନେ ଓ ସାହସୀ ସାଧବପୁଅମାନଙ୍କର ଅବଦାନ ଥିଲା ସର୍ବାଧିକ । ଜୀବନକୁ ଭ୍ରୂକ୍ଷେପ ନକରି ଅତୀତର ସାଧବପୁଅମାନେ ସାତ ସମୁଦ୍ର ଓ ତେର ନଈ ପାରି ହୋଇ ବୋଇତ ବା ପାଲଟଣା ଡଙ୍ଗାରେ ବିଦେଶକୁ ଯାଇ ବାଣିଜ୍ୟ ବ୍ୟବସାୟ କରି ଉତ୍କଳକୁ ସୁନା, ରୂପା, ରତ୍ନ, ହୀରା, ନୀଳା ଇତ୍ୟାଦି ଧନ ସମ୍ପତ୍ତି ନେଇ ଆସୁଥିବାର କିମ୍ବଦନ୍ତୀମାନ ଇତିହାସ କହେ । ବୋଇତ ବନ୍ଦାଣ ଏହାର ମୂକସାକ୍ଷୀ ସଦୃଶ ଅଟେ ।

ଆଜିର ଓଡ଼ିଶା ତଥା ନବ ଉତ୍କଳ ସେହି ପ୍ରାଚୀନ କଳିଙ୍ଗ ଭୂଖଣ୍ଡ ପରିସୀମା ଦ୍ୱାରା ଆଧାରିତ ଓ ପୂର୍ବପୁରୁଷମାନଙ୍କର ଦାୟାଦ ହୋଇଥିବାରୁ ଆଜି ଏହି ଜାତି ତା'ର ଅତୀତ ଗୌରବ ଓ ଗାରିମାରେ ଗୌରବାନ୍ୱିତ । ତତ୍କାଳୀନ ସମୟର ସାହିତ୍ୟ, ଇତିହାସ, ପୁରାଣ



ତାମ୍ରଲିପି, ଶିଳାଲେଖ ତଥା ପରିବ୍ରାଜକମାନଙ୍କ ପରିଭ୍ରମଣର ବିବରଣୀରୁ ଜଣାଯାଏ, କଳିଙ୍ଗର ଦୁର୍ଦ୍ଧର୍ଷ, ବୀର, ଯୁବ ସାଧବପୁଅମାନେ ଜଳପଥରେ ଯାଇ ଦୂର ବିଦେଶରେ ବାଣିଜ୍ୟ ବ୍ୟବସାୟ କରି ନିଜ ଦେଶକୁ ଏକ ବିଭବଶାଳୀ ଦେଶରେ ପରିଣତ କରିପାରିଥିଲେ । ଅତି ପ୍ରାଚୀନ କାଳରୁ ବୟନ ଶିଳ୍ପରେ ଓଡ଼ିଶା ସାରା ବିଶ୍ୱରେ ପ୍ରସିଦ୍ଧି ଲାଭ କରିଥିଲା । ପ୍ରଚୁର ପରିମାଣର ସୂକ୍ଷ୍ମ କାରୁକାର୍ଯ୍ୟର ସାମଗ୍ରୀ, ବସ୍ତ୍ର, ପାଟଲୁଗା, ତାରକସି କାର୍ଯ୍ୟର ପଦାର୍ଥ ତଥା ପଣ୍ୟଦ୍ରବ୍ୟ ଇତ୍ୟାଦି ଉତ୍ପାଦନ କରିବା ପାଇଁ ଭାରତରେ ଉତ୍କଳ ଥିଲା ଅଦ୍ୱିତୀୟ । ଏହି ବିଶାଳ ସାମ୍ରାଜ୍ୟ ଅସୀମ ସମୁଦ୍ର କୂଳରେ ମୁଣ୍ଡ ଟେକିଥିଲା । ଏହାର ଭୌଗୋଳିକ ପରିସୀମା ଦିନେ ଉତ୍ତରରେ ପୁଣ୍ୟତୋୟା ଗଙ୍ଗା, ଦକ୍ଷିଣରେ ପାପନାଶିନୀ ଗୋଦାବରୀ, ପୂର୍ବରେ ମହାତୀର୍ଥ ମହୋଦଧି ଓ ପଶ୍ଚିମରେ ଗିରିତୀର୍ଥ ଅମରକଣ୍ଟକ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା ।

ଆଜକୁ ପ୍ରାୟ ୨୦୦୦ ବର୍ଷ ପୂର୍ବରୁ ବୀର ସାଧବପୁଅମାନେ ସୁଦୀର୍ଘ ବଙ୍ଗୋପସାଗରର ଜଳରାଶିକୁ ଅତିକ୍ରମ କରି ତାଙ୍କର ବ୍ୟବସାୟ ବାଣିଜ୍ୟର ଏକ ଅସରନ୍ତି ପସରା ମେଲାଇ ଦେଇଥିଲେ । ଦିନଥିଲା ଯେତେବେଳେ ଉତ୍କଳର ସୌଦାଗରମାନେ ପାଲଟଣା ବୋଇତ ସାହାଯ୍ୟରେ କାର୍ତ୍ତିକ ମାସର ପୂର୍ଣ୍ଣମୀ ତିଥିରେ ସ୍ୱଦେଶର ହାତୀଦାନ୍ତର ସୂକ୍ଷ୍ମ କାରୁକାର୍ଯ୍ୟ, ପାଟଲୁଗା, ହସ୍ତଶିଳ୍ପର ଘରକରଣା ସାମଗ୍ରୀ ଇତ୍ୟାଦି ପଣ୍ୟଦ୍ରବ୍ୟମାନ ବୋହି ନେଇ ଦରିଆପାରି ଦୂରଦେଶ ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ, ବର୍ମା, ବ୍ରହ୍ମଦେଶ, ଗଙ୍ଗାସାଗର, ସିଂହଳ ଓ ଚୀନ ଆଦି ଦେଶରେ ବିକ୍ରୟ କରୁଥିଲେ ଏବଂ ସ୍ୱଦେଶକୁ ଅଜସ୍ର ଧନ, ରତ୍ନ, ସୁନା, ରୂପା, ମଣି, ମାଣିକ୍ୟ ବୋହି ଆଣିବା ସଂଗେସଂଗେ ଉତ୍କଳର

ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ମାନଦଣ୍ଡକୁ ସ୍ୱଚ୍ଛଳ କରାଇପାରିଥିଲେ । ଏତଦ୍‌ବ୍ୟତୀତ ବିଦେଶୀ ଭୂମିରେ ଉପନିବେଶମାନ ସାହାଯ୍ୟରେ କଳିଙ୍ଗର ଯଶ ଓ କୀର୍ତ୍ତିରାଜିଗୁଡ଼ିକର ପ୍ରସାର କରିଥିଲେ । ଏହାଦ୍ୱାରା ପୃଥିବୀର ଦେଶ ଦେଶ ମଧ୍ୟରେ କଳା, ସଂସ୍କୃତି, ସାହିତ୍ୟ, ସାମାଜିକ ରୀତିନୀତି ଓ ଭାଷାର ଆଦାନପ୍ରଦାନ ହେବା ସଂଗେସଂଗେ ପରସ୍ପର ମଧ୍ୟରେ ସ୍ନେହ, ଶ୍ରଦ୍ଧା ଓ ଭ୍ରାତୃପ୍ରୀତିର ଡୋରିରେ ବାନ୍ଧି ହୋଇଥିଲେ । ଏପରିକି ଗୋଟିଏ ପରିବାରର ସଦସ୍ୟ ରୂପେ ସମଗ୍ର ପୃଥିବୀବାସୀ ଐକ୍ୟ, ମୈତ୍ରୀ, ନୀତି ଆଦର୍ଶ, ସରଳତା ଓ ସାଧୁତାର ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ।

ତତ୍କାଳୀନ ସମୟରେ ଓଡ଼ିଆ ସାଧବପୁଅର ବୋଇତ ନିର୍ମାଣର ଗଠନ ଶୈଳୀ, ନୌକା ଚାଳନାର କୌଶଳ ଓ ଆବଶ୍ୟକୀୟ ସାମଗ୍ରୀ ସମ୍ବନ୍ଧରେ ସଠିକ୍ ଧାରଣା ସେମାନଙ୍କୁ ଏତେବଡ଼ ସୋପାନକୁ ନେଇଯାଇଥିଲା । ସେମାନଙ୍କର ଅସୀମ ଶକ୍ତି, ସାହସ ଓ ଧୈର୍ଯ୍ୟ ଯୋଗୁଁ ଅକାତକାତ ଜଳରାଶି ବକ୍ଷରେ ଶହ ଶହ ମାଇଲ ଧରି ସଂଘବଦ୍ଧ ଭାବରେ ଏକାଧିକ ବୋଇତ ଚଳାଇ ସାମୁଦ୍ରିକ ବାଣିଜ୍ୟ ବ୍ୟବସାୟ କରି ଦେଶକୁ ଏକ ଧନଶାଳୀ ରାଜ୍ୟ ରୂପେ ଗଢ଼ି ପାରିଥିଲେ । ଉତ୍କଳର ସାଧବପୁଅମାନଙ୍କର ଏପରି ନୌକା ଚାଳନାର ଦକ୍ଷତା ଓ ପରାକ୍ରମ ଭାରତର ଅନ୍ୟ କେଉଁ ରାଜ୍ୟର ସାଧବପୁଅମାନଙ୍କ ପାଖରେ ଦେଖିବାକୁ ମିଳି ନଥିଲା । ସେ ଯୁଗର ଓଡ଼ିଆ ପୁଅମାନଙ୍କ ଶକ୍ତି ଓ ସାମର୍ଥ୍ୟ ସମ୍ପ୍ରତି କାଳର କରାଳ ଗର୍ଭରେ ଲୀନ ହୋଇଯାଇଥିଲେ ମଧ୍ୟ ଆଜି ସେହି ଅତୀତର ଗୌରବ ଓ ଗାରିମାର ଅଭୁଲା ସ୍ମୃତି ପାଇଁ ଓଡ଼ିଆ ବିଶ୍ୱ ଦରବାରରେ ବନ୍ଦନୀୟ ।

ଅତୀତର ସାହସୀ, ଯୋଦ୍ଧା ତଥା ବୀରପୁତ୍ର ସାଧବପୁଅମାନଙ୍କର ମଧ୍ୟରେ ଆଗ୍ରହ ଜନ୍ମାଇବା, ଐଶ୍ୱରୀକ ଶକ୍ତି ପ୍ରାପ୍ତ ହେବା ଓ ନୌବାଣିଜ୍ୟର ଶୁଭକାମନା କରିବା ପାଇଁ ବହୁ ଆବହମାନ କାଳରୁ ବୋଇତ ବନ୍ଦାଣ ଉତ୍ସବ ପାଳନ କରାଯାଉଅଛି । ତେଣୁ ସାଧବ ଘରର କୁଳ ବୋହୂମାନେ ପ୍ରତିବର୍ଷ କାର୍ତ୍ତିକ ମାସର ପୂର୍ଣ୍ଣମୀ ତିଥିରେ ସମୁଦ୍ର କୂଳରେ ଥିବା ବନ୍ଦରମାନଙ୍କରେ ବୋଇତଗୁଡ଼ିକୁ ବୈଦିକ ରୀତିରେ ଶୁଭ ହୁଳହୁଳି ଓ ଧୂପଦୀପ ମାଧ୍ୟମରେ ବନ୍ଦାପନା କରି ମେଲାଣି ଦେଇଥାନ୍ତି । ବହୁ ଆବହମାନ କାଳରୁ ମାନବ ସମାଜ ବିଭିନ୍ନ ପୌରାଣିକ ଓ ଐତିହାସିକ ଘଟଣାବଳୀକୁ ମନେ ରଖିବା ପାଇଁ ପାରମ୍ପରିକ କ୍ରମେ ଓଷାବ୍ରତ, ପର୍ବପର୍ବାଣି ଓ ମେଳା ମହୋତ୍ସବ ପାଳନ କରି ଆସୁଛନ୍ତି । ତନ୍ମଧ୍ୟରୁ ଏକ ପବିତ୍ର ଓ ଧାର୍ମିକ ପରମ୍ପରାର ମୂକସାକ୍ଷୀ ରୂପେ ବୋଇତ ବନ୍ଦାଣ ଉତ୍ସବ ଅନ୍ୟତମ । ଅତୀତର କୀର୍ତ୍ତିରାଜିକୁ ଜୀବିତ ରଖିବା ପାଇଁ ଓଡ଼ିଆ ଘରର କୁଳବୋହୂମାନେ ସେହି ବୋଇତ ବନ୍ଦାଣ ଉତ୍ସବକୁ ମହାସମାରୋହରେ ପାଳନ କରିଆସୁଛନ୍ତି । କଦଳୀ ଗଛର ବାହୁଙ୍ଗାରେ ବା ସୋଲ ଓ କାଗଜରେ ନିର୍ମିତ ଡଙ୍ଗାଗୁଡ଼ିକରେ ଖଡ଼ିକାର ଅଗ୍ରଭାଗରେ ତୂଳା ସହିତ ଘିଅ, କର୍ପୂର, ଧୂପ ଜଳାଇ ଓ ସେଥିରେ ପାନ, ଗୁଆ, ସୋରିଷ ଓ ଯଅ ଥୋଇ ହରିବୋଲ ହୁଳହୁଳି ଶବ୍ଦ ମାଧ୍ୟମରେ ପ୍ରତିବର୍ଷ ପବିତ୍ର କାର୍ତ୍ତିକ ମାସର ପୂର୍ଣ୍ଣମୀ ଦିନ ପ୍ରତ୍ୟୁଷରୁ ଶିବପୀଠ ନିକଟରେ ଥିବା ନଦୀ, ନାଳ, ପୁଷ୍କରିଣୀ ଓ ସମୁଦ୍ରରେ ବନ୍ଦାପନା ପୂର୍ବକ ମେଲାଣି ଦେଇଥାନ୍ତି । ଆଉ ମଧ୍ୟ 'ଆ-କା-ମା-ବୈ, ପାନ ଗୁଆ ଥୋଇ, ପାନଗୁଆ ତୋର, ମାସକ ଧର୍ମ ମୋର', ବୋଲି ମନ୍ତ୍ରପାଠ କରିଥାନ୍ତି । ବୋଇତ ବନ୍ଦାଣ ଉତ୍ସବଟି ଉତ୍କଳର ଏକ ସାର୍ବଜନୀନ ପର୍ବ ଭାବେ ସ୍ୱୀକୃତି ଲାଭ କରିବା ସଂଗେସଂଗେ ପ୍ରାଚୀନ ଉତ୍କଳର ନୌବାଣିଜ୍ୟର ହଜିଲା ସ୍ମୃତିକୁ ଜନମାନସରେ ଜାଗ୍ରତ କରାଇଥାଏ ।

ବିବର୍ତ୍ତନବାଦର ସ୍ରୋତରେ ପ୍ରାଚୀନ ଉତ୍କଳର କଳା, ସଂସ୍କୃତି, ପରମ୍ପରା ତଥା ଐତିହ୍ୟ ବିଲୁପ ଆଡ଼କୁ ମୁହାଇଁ ଥିଲେ ମଧ୍ୟ ଐତିହାସିକ କଟକ ସହରର ବାଲିଯାତ୍ରା ତା'ର ପୂର୍ବ ସ୍ମୃତିର ଗୌରବ ଓ ଗାରିମା ଅକ୍ଷୁଣ୍ଣ ରଖିପାରିଛି । ଆଜି ନୁହେଁ ବହୁ ପୁରାତନ ଯୁଗରୁ କଟକ ସହର, ଓଡ଼ିଶା କାହିଁକି ସମଗ୍ର ଭାରତ ମାନଚିତ୍ରରେ ଗୋଟିଏ ଐତିହାସିକ, ପୌରାଣିକ, ନୌବାଣିଜ୍ୟ, ଶିକ୍ଷା, ସାହିତ୍ୟ, କଳା, ସଂସ୍କୃତି ଇତ୍ୟାଦିର ପ୍ରାଣକେନ୍ଦ୍ର ରୂପେ ମର୍ଯ୍ୟାଦା ଲାଭ କରିଛି । ତେଣୁ କଟକକୁ କହନ୍ତି କଟକ ନଗର, ଧବଳ ଟଗର । ଆଉ ମଧ୍ୟ ଏହାର ତଟ ଦେଶରେ ପ୍ରବାହିତ ପୁଣ୍ୟତୋୟା ମହାନଦୀ ଏହାର ଶୋଭା, ସୌନ୍ଦର୍ଯ୍ୟ ଓ ମାଧୁରୀକୁ ମହକାଇ ପାରିଛି । ଯଦିଓ ଏହି ଯାତ୍ରାଟି ଗୋଟିଏ ଧାର୍ମିକ ପର୍ବ କିନ୍ତୁ କାଳକ୍ରମେ ଏହା ଗୋଟିଏ ଜାତୀୟ ପର୍ବ ରୂପେ ଖ୍ୟାତିଲାଭ କରିଛି । କାରଣ ସମଗ୍ର ଓଡ଼ିଶାବାସୀ ଏହି ପର୍ବକୁ ରାଜ୍ୟସ୍ତରରେ ପାଳନ କରୁଛନ୍ତି । ତେଣୁ ଏହି ଯାତ୍ରା ଓ କଟକ ସହର ହେଉଛି ସମଗ୍ର ଓଡ଼ିଶାର ଗର୍ବ ଓ ଗୌରବର ଭଣ୍ଡାର ସଦୃଶ ।

ବାଲିଯାତ୍ରା ପର୍ବର ନାମକରଣ କେବେ ଓ କାହିଁକି ହେଲା ଓ କେବେଠାରୁ ଏହି ପର୍ବପାଳନ ହେଲା, ତା'ର କିଛି ସଠିକ୍ ପ୍ରମାଣ ନଥିଲେ ମଧ୍ୟ ବିଭିନ୍ନ ଐତିହାସିକ ଓ ଗବେଷକମାନେ ଭିନ୍ନ ଭିନ୍ନ ମତପୋଷଣ କରିଛନ୍ତି । କେହି କେହି ମତପୋଷଣ କରନ୍ତି କାର୍ତ୍ତିକ ମାସ ପୂର୍ଣ୍ଣମୀ ଦିନ ଶ୍ରୀଚୈତନ୍ୟ ମହାପ୍ରଭୁ କଟକର ପୁଣ୍ୟତୋୟା ମହାନଦୀର ତଟଦେଶରେ ଥିବା ବାଲୁକା ରାଶି ଉପରେ ବିଷ୍ଣୁପ୍ରେମ ରସରେ ଆତ୍ମହରା ପୂର୍ବକ ଗଡ଼ି ଗଡ଼ି ନାମ କୀର୍ତ୍ତନ କରିଥିଲେ । ତେଣୁ ସେହିଦିନଠାରୁ ସେହି ପୀଠର ନାମ ଗଡ଼ଗଡ଼ିଆ ଘାଟ ଓ ଯାତ୍ରାକୁ ବାଲିଯାତ୍ରା ଆଖ୍ୟାରେ ନାମିତ କରାଯାଇଅଛି । ଦ୍ୱିତୀୟ ମତରେ ଅତୀତରେ ସାଧବ ଘରର କୁଳବୋହୂମାନେ ଏହି ବାଲୁକାପୂର୍ଣ୍ଣ ପୀଠରେ ସାଧବପୁଅମାନଙ୍କୁ ଦୂରଦେଶକୁ ବାଣିଜ୍ୟ କରିବା ପାଇଁ ମେଲାଣି ଦେଇଥିଲେ ଓ ପୁନରାୟ ପ୍ରତ୍ୟାବର୍ତ୍ତନ ସମୟରେ ସ୍ୱାଗତ ସମ୍ବର୍ଦ୍ଧନା ଅର୍ପଣ କରିଥିଲେ । ବାଲି ଉପରେ ଏହିସବୁ ଶୁଭ କାର୍ଯ୍ୟ ସମ୍ପାଦନ ହୋଇଥିବାରୁ ଏହାକୁ ବାଲିଯାତ୍ରାର ଆଖ୍ୟା ଦିଆଯାଇଅଛି । ତୃତୀୟତ ଓଡ଼ିଆ ଘରର ସାଧବଝିଅର 'ଖୁଦୁରୁକୁଣୀ ଓଷା' ଏକ ଐତିହାସିକ

କିମ୍ବଦନ୍ତୀକୁ ତର୍ଜମା କଲେ ଏହି ଯାତ୍ରାର ନାମକରଣ, ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପରିଲକ୍ଷିତ ହୁଏ । ସର୍ବଶେଷରେ, ବୋଇତ ବନ୍ଦାଣ ଓ ବାଲିଯାତ୍ରା ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଏଥିରୁ ଜଣାପଡୁଅଛି ଯେଉଁ ଦିନଠାରୁ ପ୍ରାଚୀନ ଉତ୍କଳ ପୀଠରେ ବୋଇତ ବନ୍ଦାଣ ଉତ୍ସବ ପାଳନ ହେଉଅଛି, ସେହିଦିନଠାରୁ କଟକସ୍ଥିତ ବାଲିଯାତ୍ରା ଉତ୍ସବ ପାଳନ ହେଉଅଛି ବୋଲି ଅନୁମେୟ ।

ପୌରାଣିକ ମତବାଦରେ ବର୍ଷକ ବାର ମାସ ମଧ୍ୟରେ କାର୍ତ୍ତିକ ମାସ ସବୁମାସଠାରୁ ଏକ ମହାନ୍, ପବିତ୍ର ଓ ଧାର୍ମିକ ମାସ ଭାବରେ ସୁବିଦିତ । ଏହି ମାସର ପ୍ରତ୍ୟେକ ଦିନର ପ୍ରତ୍ୟେକ ମୁହୂର୍ତ୍ତ ଦେବାଦେବୀଙ୍କର ପୂଜାର୍ଚ୍ଚନା ଓ ଶୁଭ କାମନାର ସମୟ ଅଟେ । ଶରତ ଋତୁର ବିଦାୟ ଓ ହେମନ୍ତ ଋତୁର ପ୍ରାରମ୍ଭରେ ଜଳବାୟୁ ଶାନ୍ତ ଓ ଶୀତଳ, ମେଘମୁକ୍ତ ଆକାଶ, ସମୁଦ୍ର ଜଳରାଶି ଧୀର, ସ୍ଥିର ଓ ହୃଦୟସ୍ପର୍ଶୀ ପରିବେଶ ଅନୁଭୂତ ହୁଏ ଏହି ମାସରେ । ତେଣୁ ଏହି ପବିତ୍ର ମାସରେ ଅତୀତରେ ସାଧବପୁଅମାନେ ପାଲଟଣା ଡଙ୍ଗା ବା ବୋଇତ ମାଧ୍ୟମରେ ଅମାପ ଜଳରାଶିକୁ ଅତିକ୍ରମ କରି ବୀର ଓ ସାହସିକତାର ସହିତ ଜୀବନକୁ ଭ୍ରୂକ୍ଷେପ ନକରି ଦୂରଦେଶକୁ ବାଣିଜ୍ୟ ବ୍ୟବସାୟ କରିବାକୁ ଯାଇଥାଆନ୍ତି । ସେମାନଙ୍କର ଯାତ୍ରାର ଶୁଭାରମ୍ଭ ଓ ପ୍ରତ୍ୟାବର୍ତ୍ତନର ସମୟରେ ସାଧବ ଘରର ବୋହୂମାନେ ସେମାନଙ୍କୁ ବିଦାୟ ଦେବା ଓ ସ୍ୱାଗତ ସମ୍ବର୍ଦ୍ଧନା ସହିତ ପାଛୋଟି ଆଣିବା ପାଇଁ ବନ୍ଦରଗୁଡ଼ିକର ତଟଦେଶରେ ବୋଇତଗୁଡ଼ିକୁ ବନ୍ଦାପନା କରିବା ସଂଗେସଂଗେ ଯାତ୍ରାର ଶୁଭକାମନା କରିଥାନ୍ତି । ତତ୍କାଳୀନ ସମୟରେ ପ୍ରାଚୀନ ଉତ୍କଳର ଥିବା ନୌବାଣିଜ୍ୟ କେନ୍ଦ୍ର ତଥା ବନ୍ଦରମାନଙ୍କ ମଧ୍ୟରେ କଟକର ଗଡ଼ଗଡ଼ିଆ ଘାଟର ବନ୍ଦର ବିଶ୍ୱ ପ୍ରସିଦ୍ଧି ଲାଭ କରିଥିଲା । କାରଣ ସେହି ସମୟରୁ ଏହି ପୀଠରେ ହଜାର ହଜାର ଯାତ୍ରୀ ସ୍ନାନ, ତର୍ପଣ ପୂର୍ବକ ପୂଜାର୍ଚ୍ଚନା କରିବାର ପରମ୍ପରା ଅଦ୍ୟାବଧି ରହିଆସିଅଛି । ଅତୀତରେ କଟକ ଓଡ଼ିଶାର ରାଜଧାନୀ ଥିଲା । ତେଣୁ ଏହି ପୀଠର ମହତ୍ୱ ଓ ଗୁରୁତ୍ୱ ଅନ୍ୟ ସବୁ ପୀଠଠାରୁ ସ୍ୱତନ୍ତ୍ର ।

ସେହିପରି ସାଧବପୁଅମାନଙ୍କର ଦୂରଦେଶରୁ ବାଣିଜ୍ୟ ବ୍ୟବସାୟ ସାରି ପ୍ରତ୍ୟାବର୍ତ୍ତନ ସମୟରେ ଏହି ଘାଟରେ ଅବତରଣ କରିଥାନ୍ତି । ସେତେବେଳେ ମଧ୍ୟ ସେମାନଙ୍କୁ ପାଛୋଟି ନେବା ପାଇଁ ବିଭିନ୍ନ ସ୍ଥାନରୁ ଆସିଥିବା ସେମାନଙ୍କର ଆତ୍ମୀୟ ସ୍ୱଜନମାନେ ଆନନ୍ଦ ମୁଖରିତ ପରିବେଶ ମଧ୍ୟରେ ଅପେକ୍ଷା କରିଥାନ୍ତି । ଆଉମଧ୍ୟ ଏକାଧିକ ବୋଇତ ଏହାର ତଟଦେଶରେ ସମବେତ ହୋଇ ସେହି ସ୍ଥାନର ଗୌରବ ଓ ଗାରିମାକୁ ଦ୍ୱିଗୁଣିତ କରାଇଥାଏ । ସେମାନେ ଆଣିଥିବା ଧନ, ରତ୍ନ, ସୁନା, ରୂପା, ହୀରା, ନୀଳା, ମୋତି ଓ ମାଣିକର ସମ୍ମିଶ୍ରଣରେ ପର୍ଯ୍ୟାୟକ୍ରମେ ସେହି ସ୍ଥାନଟି ଗୋଟିଏ ନୌବାଣିଜ୍ୟର କେନ୍ଦ୍ର ରୂପେ ମୁଣ୍ଡ ଟେକିଥିଲା । ଅତଏବ କାଳକ୍ରମେ ସେହି ଘାଟଟି ଗୋଟିଏ ଧର୍ମପୀଠ, ପୌରାଣିକ କ୍ଷେତ୍ର, ନୌବାଣିଜ୍ୟ କେନ୍ଦ୍ର, ସାମାଜିକ, ସାଂସ୍କୃତିକ, କଳା, ପରମ୍ପରା ଓ ଐତିହ୍ୟ ପୀଠ ଭାବରେ ସ୍ୱର୍ଣ୍ଣାକ୍ଷରରେ ଇତିହାସ ପ୍ରସିଦ୍ଧି ଲାଭ କରିଥିଲା । ଏତଦ୍‌ବ୍ୟତୀତ 'ବାଲିଯାତ୍ରା' ପୀଠଟି ଦିନେ ଏକ ଜଳବାହିନୀର ସାମରିକ କେନ୍ଦ୍ର ଭାବେ ସମଗ୍ର ଭାରତବର୍ଷରେ ମୁଣ୍ଡ ଟେକିଥିଲା । ଏହାର ମୂକସାକ୍ଷୀ ରୂପେ ଗଡ଼ଗଡ଼ିଆ ଘାଟର ଅନତି ଦୂରରେ କଟକର ବାରବାଟୀ ଦୁର୍ଗ ବିଦ୍ୟମାନ । ଏହି ପୀଠର ପବିତ୍ରତା, ମହାନତା ଓ ଆଧ୍ୟାତ୍ମିକତା ଗୁଣଗୁଡ଼ିକ ଆଣି ଦେଇଛି ଜାତି, ଧର୍ମ, ବର୍ଣ୍ଣ, ସାନ, ବଡ଼ ଓ ଧନୀ ଦରିଦ୍ରମାନଙ୍କ ମଧ୍ୟରେ ଶ୍ରଦ୍ଧା, ସ୍ନେହ, ସଦ୍‌ଭାବ ଓ ଭ୍ରାତୃପ୍ରୀତିର ସୁ-ସମ୍ପର୍କ । ଆଉ ମଧ୍ୟ ଦେଶ ଦେଶ ମଧ୍ୟରେ ସୃଷ୍ଟି କରିପାରିଛି ଶାନ୍ତି ଓ ମୈତ୍ରୀର ବାଣୀ । ଦେଶମାନଙ୍କ ମଧ୍ୟରେ ସାଂସ୍କୃତିକ ଆଦାନପ୍ରଦାନ ଯୋଗୁଁ ଉନ୍ନତି ସାଧିତ ହୋଇପାରିଛି କଳା, ସଂସ୍କୃତି, ପରମ୍ପରା, ସାହିତ୍ୟ, ଶିକ୍ଷା, ଭାଷା ଓ ସାମାଜିକ ଚାଲିଚଳନ ଇତ୍ୟାଦି ।

ଅତୀତର ସେହି କଟକର ବାଲିଯାତ୍ରା ଉତ୍ସବର ଗୌରବମୟ ଐତିହ୍ୟକୁ ସ୍ମରଣ କରିବା ପାଇଁ ଓ ଆଜିର ଦାୟାଦ ସେହି ଅଭୁଲା ସ୍ମୃତିକୁ ଅନୁକରଣ କରିବା ପାଇଁ ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣମୀ ତିଥିରେ ଏହାକୁ ମହାଆଡ଼ମ୍ବର ଓ ସମାରୋହରେ ପାଳନ କରିଆସୁଛନ୍ତି । ଅତୀତର ବାଲିଯାତ୍ରା ଉତ୍ସବ ଓ ବର୍ତ୍ତମାନର ବାଲିଯାତ୍ରା ଉତ୍ସବକୁ ତୁଳନା କଲେ, ଆକାଶ ପାତାଳ ଫରକ ଜଣାପଡ଼େ । ବର୍ତ୍ତମାନ ସେହି ବାଲିଯାତ୍ରା ପଡ଼ିଆ ଏକ ବିସ୍ତୀର୍ଣ୍ଣ ପଡ଼ିଆ ହୋଇଥିଲେ ମଧ୍ୟ ଅଧିକ ଜନଗହଳି ଓ ଦୋକାନଗୁଡ଼ିକର ସମାବେଶ ହେତୁ ନଦୀବନ୍ଧ ଭିତରେ ଥିବା ବାଲିପୀଠକୁ ପ୍ରସାରିତ ହୋଇଅଛି । ରାଜ୍ୟ ଓ ରାଜ୍ୟ ବାହାରୁ ବ୍ୟବସାୟିକ ପ୍ରତିଷ୍ଠାନମାନେ ଯାତ୍ରାର ଅବ୍ୟବହିତ ପୂର୍ବରୁ ଦିନେ ଦୁଇଦିନ ଆଗରୁ ଆସି ସେମାନଙ୍କର ସୂକ୍ଷ୍ମ କାରୁକାର୍ଯ୍ୟର ଘର ଉପକରଣ, ତାରକସି କାର୍ଯ୍ୟ ସାମଗ୍ରୀ, କଂସା ବାସନଠାରୁ ପିପିଲିର ଚାନ୍ଦୁଆ ପର୍ଯ୍ୟନ୍ତ ଦୋକାନଗୁଡ଼ିକ ଧାଡ଼ି ପରେ ଧାଡ଼ି ସୁସଜ୍ଜିତ ଭାବରେ ଲମ୍ବାଇ ଦେଇଥାନ୍ତି । ଆଉମଧ୍ୟ ଶହ ଶହ ଉଠା ଦୋକାନୀ ଯଥା- ଦହିବରାଠାରୁ ଆରମ୍ଭ କରି ବାରମଜା, ଗୁପ୍‌ଚୁପ୍, ଠୁଙ୍କା ପୁରି, ଆଳୁଦମ୍ ଓ ଆରିସା ପୀଠାର ସୁଆଦ କହିଲେ ନସରେ । ଓଡ଼ିଶାର ସମସ୍ତ ଜିଲ୍ଲା ସମେତ ଓଡ଼ିଶା ବାହାରୁ ଲକ୍ଷ ଲକ୍ଷ ଭକ୍ତ, ଯାତ୍ରୀ ଓ ଦର୍ଶକମାନଙ୍କର ସମାବେଶ ଫଳରେ ସେହି ସ୍ଥାନଟି ଚଳଚଞ୍ଚଳ ହୋଇଯିବା ସଂଗେସଂଗେ ସେହି ଲୋକାରଣ୍ୟ ପରିବେଶ ସମୁଦ୍ର ଗର୍ଜନପରି ବହୁଦୂରକୁ ସଙ୍କେତ ଦେଇ ଥାଏ ।

ପ୍ରତିଦିନ ବିଭିନ୍ନ ପ୍ରକାରର ଯୁଗୋପଯୋଗୀ ସାଂସ୍କୃତିକ କାର୍ଯ୍ୟକ୍ରମ ଯଥା- ଗୀତ ନାଚଠାରୁ ଆରମ୍ଭକରି ଯାତ୍ରା, ପାଲା, ଦାସକାଠିଆର ପରିବେଷଣ ଲକ୍ଷ ଲକ୍ଷ ଦର୍ଶକମାନଙ୍କ ମନକୁ ମୋହି ନେବା ସଂଗେସଂଗେ ସୃଷ୍ଟି କରିଥାଏ ଅଗଣିତ ପରମ ଭକ୍ତମାନଙ୍କ ମନରେ ପ୍ରେମ ରସବାଣୀ । ଓଡ଼ିଶା କାହିଁକି ସର୍ବଭାରତୀୟ ସ୍ତରର ସଂଗୀତ ବିଶାରଦ, ସୁନାମଧନ୍ୟ ପାଲାଗାୟକ, ନିପୁଣ କଳାକାର,

କବି ଲେଖକ ଓ ସୁବକ୍ତାମାନଙ୍କର କାର୍ଯ୍ୟକ୍ରମ ଦିବାରାତି ପର୍ଯ୍ୟାୟକ୍ରମେ ଅନୁଷ୍ଠିତ ହେଉଥାଏ ।

ଏହି ଉତ୍ସବଟିକୁ ଶାନ୍ତିଶୃଙ୍ଖଳାର ସହିତ ପରିଚାଳନା କରିବା ପାଇଁ ଓଡ଼ିଶା ସରକାରଙ୍କର ତତ୍ତ୍ୱାବଧାନରେ ଏକ କମିଟି ଗଠନ ହୋଇଅଛି । ଏହି କମିଟି ଉତ୍ସବ ଆରମ୍ଭ ପୂର୍ବରୁ ଏକ ବୈଠକ ବସି ଯୋଜନା ପ୍ରସ୍ତୁତ ହୋଇଥାଏ । ଏହି କମିଟି ସ୍ଥାନୀୟ ଲୋକସଭା ସାଂସଦ, ବିଧାନସଭାର ସଦସ୍ୟ ସମେତ ଜିଲ୍ଲାପାଳ, ଆରକ୍ଷୀ ଅଧୀକ୍ଷକ, କଟକ ସହରର ଜଣାଶୁଣା କେତେଜଣ ବୁଦ୍ଧିଜୀବୀଙ୍କୁ ନେଇ ଗଠିତ ହୋଇଥାଏ । ଏପରିକି ସ୍ୱାସ୍ଥ୍ୟ, ସେବା, ପାନୀୟ ଜଳ, ରାସ୍ତାଘାଟ ସଫେଇ ଓ ଶାନ୍ତିଶୃଙ୍ଖଳା ପାଇଁ ନିୟୋଜିତ କର୍ମଚାରୀମାନେ ଯଥାସ୍ଥାନ ଓ ଯଥାସମୟରେ ଉପସ୍ଥିତ ରହି ସେମାନଙ୍କର କାର୍ଯ୍ୟ ସମ୍ପାଦନା କରିଥାଆନ୍ତି ।

ସର୍ବଶେଷରେ ଉତ୍କଳମାତାର ଗୌରବ ଓ ଗାରିମାର ଅଭୁଲା ସ୍ମୃତି ଓ ପୂର୍ବପୁରୁଷମାନଙ୍କର ବୀରତ୍ୱ, ସାହସ ଇତ୍ୟାଦି ମହତଗୁଣକୁ ପ୍ରତ୍ୟେକ ଓଡ଼ିଆ ଯୁବପିଢ଼ି ଓ ଛାତ୍ର ସମାଜ ଅନୁକରଣ କରି ସେମାନଙ୍କର ଦୈନନ୍ଦିନ କାର୍ଯ୍ୟ କରିବା ଏକାନ୍ତ ବାଞ୍ଛନୀୟ । ଫଳରେ ଅତୀତର ସେହି ସ୍ମୃତି ପୁନରାୟ ଫେରି ଆସିବା ସଂଗେସଂଗେ ଆଜିର ଓଡ଼ିଶା ରାମରାଜ୍ୟରେ ପରିଣତ ହୋଇପାରିବ ।

ଘର ନଂ.-୩୫/୭
ୟୁନିଟ୍-୮, ଭୁବନେଶ୍ୱର

# ବରୀଠାରେ ଦୂରଦର୍ଶନ ପକ୍ଷରୁ ଶସ୍ୟ ସଂଗୋଷ୍ଠୀ ଆସର

ବରୀ ବ୍ଲକ୍ ଅନ୍ତର୍ଗତ ଅରଙ୍ଗାବାଦ ପଞ୍ଚାୟତର ଚାଷୀ ବହୁଳ କଣ୍ଡପୋଇ ଗ୍ରାମଠାରେ ଗତ ନଭେମ୍ବର ୧୦ ତାରିଖରେ ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ର ପକ୍ଷରୁ କୃଷି ଦର୍ଶନ (ଶସ୍ୟ ସଂଗୋଷ୍ଠୀ) କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । ଏହି କାର୍ଯ୍ୟକ୍ରମଟି ଦୂରଦର୍ଶନ ପକ୍ଷରୁ ସିଧା ପ୍ରସାରଣ କରାଯାଇଥିଲା । ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଏବଂ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ଏହାକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ଏହି ଅବସରରେ ମନ୍ତ୍ରୀ ଶ୍ରୀ ନାୟକ କହିଲେ ଯେ ଦୂରଦର୍ଶନ ପକ୍ଷରୁ ଏହା ଏକ ଅଭିନବ ପଦକ୍ଷେପ । ଓଡ଼ିଶା ହେଉଛି ଏକ କୃଷିପ୍ରଧାନ ରାଜ୍ୟ । କୃଷି ହେଉଛି ଆମର ଜୀବନ ଓ ଜୀବିକା । କୃଷି ଓ କୃଷକର ଉନ୍ନତିରେ ରାଜ୍ୟର ପ୍ରଗତି ଓ ଉନ୍ନତି ନିର୍ଭରଶୀଳ । ଦୂରଦର୍ଶନର ଏହି କାର୍ଯ୍ୟକ୍ରମ ଏ ଦିଗରେ ବିଶେଷ ସହାୟକ ହୋଇପାରିଛି । କେବଳ ବରୀ ନୁହେଁ, ସମଗ୍ର ରାଜ୍ୟର କୃଷକ ଭାଇମାନେ ଉପକୃତ ହୋଇପାରିବେ ବୋଲି ସେ କହିଥିଲେ । ଉଦ୍‌ଘାଟନୀ ଉତ୍ସବରେ ଯାଜପୁର ଜିଲ୍ଲାପାଳ ଡଃ ଅରବିନ୍ଦ ପାଢ଼ୀ ଓ ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ରର ନିର୍ଦ୍ଦେଶକ ଶ୍ରୀ ବରାହ ମହାନ୍ତିଙ୍କ ସମେତ ବିଭିନ୍ନ ବିଭାଗୀୟ ପଦାଧିକାରୀମାନେ ଯୋଗ ଦେଇଥିଲେ । ବିଭିନ୍ନ ଅଞ୍ଚଳରୁ ଆସିଥିବା ଚାଷୀମାନେ ପଶୁପାଳନ, ମାଛ ଚାଷ, ଧାନ ଚାଷ, ପନିପରିବା ଚାଷ, ତୈଳବୀଜ ଓ ଚିନାବାଦାମ ଚାଷ, ଛେଳି ଓ ଗୋ-ପାଳନ ଆଦି ସମସ୍ୟା ସଂପର୍କରେ ବିଭିନ୍ନ ପ୍ରଶ୍ନ କରିଥିଲେ । କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିଥିବା ବିଶେଷଜ୍ଞମାନେ ସେସବୁ ପ୍ରଶ୍ନର ଉତ୍ତର ଦେଇଥିଲେ । ଏହି ଅବସରରେ ସମ୍ବଲପୁରର ବରପାଲିରୁ ଆସିଥିବା ସାଂସ୍କୃତିକ ଦଳ ନୃତ୍ୟ ପରିବେଷଣ କରିଥିଲେ । କୃଷକମାନଙ୍କ ସଚେତନତା ପାଇଁ କରାଯାଇଥିବା ଏହି କାର୍ଯ୍ୟକ୍ରମରେ ହଜାର ହଜାର ଚାଷୀ ଓ ଜନସାଧାରଣ ଯୋଗ ଦେଇଥିଲେ ।

# ପ୍ରାଚୀନ କଳିଙ୍ଗର ଐତିହ୍ୟ

ବୈକୁଣ୍ଠ ନାଥ ପ୍ରଧାନ

ପ୍ରାଚୀନ କଳିଙ୍ଗର ସାଂସ୍କୃତିକ ଜୀବନଧାରା ମହାନ୍ ତଥା ଗୌରବମୟ ଥିଲା । ଓଡ଼ିଶାର ପ୍ରାଚୀନ ନାମ 'କଳିଙ୍ଗ' ଓ 'ଉତ୍କଳ' ଥିଲା । ପ୍ରଥମ ଖ୍ରୀଷ୍ଟୀୟ ଶତାବ୍ଦୀର କେତେ ବର୍ଷ ପୂର୍ବରୁ କଳିଙ୍ଗର ଲୋକମାନେ, ନୌବାଣିଜ୍ୟ କରିବା ପାଇଁ ବ୍ରହ୍ମଦେଶ, ଜାଭା, ସୁମାତ୍ରା ଓ ସିଂହଳ ଆଦି ଦେଶରେ ବାଣିଜ୍ୟ କରୁଥିଲେ । ଏତଦ୍‌ଭିନ୍ନ ପୂର୍ବ ସାଗରସ୍ଥ ଦେଶ ଓ ଦ୍ୱୀପମାନଙ୍କ ସହିତ ବାଣିଜ୍ୟ ବ୍ୟବସାୟ କରୁଥିଲେ । ଓଡ଼ିଶାର ପ୍ରାଚୀନ ଗ୍ରନ୍ଥମାନଙ୍କରୁ ପ୍ରତୀୟମାନ ହୁଏ ଯେ, ଓଡ଼ିଆ ବଣିକଗଣ ଦକ୍ଷିଣ-ପୂର୍ବ ଏସିଆର ସିଂହଳ, ବର୍ମା ଓ ମାଳୟ ଆଦି ଦେଶମାନଙ୍କରେ ପ୍ରଥମେ ବାଣିଜ୍ୟ ଓ ପରବର୍ତ୍ତୀ ସମୟରେ ବୌଦ୍ଧଧର୍ମ ପ୍ରଚାର ପାଇଁ ଜଳଯାତ୍ରା କରିଥିଲେ । ଏହିସବୁ ଦେଶମାନଙ୍କରେ ବାଣିଜ୍ୟ କରିବା ପୂର୍ବକ ସେମାନେ ଓଡ଼ିଶାର ଆର୍ଥିକ ମାନଦଣ୍ଡକୁ ଉନ୍ନତ କରିବା ପାଇଁ ସମର୍ଥ ହେବା ସଙ୍ଗେ ସଙ୍ଗେ 'ବାଣିଜ୍ୟେ ବସତେ ଲକ୍ଷ୍ମୀ' ପ୍ରବଚନକୁ ସାକାର କରିଥିଲେ ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ଜଣେ ଗ୍ରୀକ୍ ପର୍ଯ୍ୟବେକ୍ଷକ 'ଟୋଲେମି'ଙ୍କ ବିବରଣୀରୁ ଜଣାଯାଏ ଯେ 'କକର୍ଦ୍ଦମ' (କଟକ), 'କୋଣପର' (କୋଣାର୍କ), 'କେଶମ୍ଭ' (ଭଦ୍ରକର ଚାନ୍ଦବାଲି ବନ୍ଦର) ଓ ଚିଲିକା ଆଦି ସ୍ଥାନମାନଙ୍କରେ ବାଣିଜ୍ୟ କେନ୍ଦ୍ରମାନ ଥିଲା । ତାଙ୍କ ବିବରଣୀ ଅନୁସାରେ ତତ୍କାଳୀନ କଳିଙ୍ଗରେ ଅନେକ ବନ୍ଦର ଯଥା- ନନିଗେନ୍ (ପୁରୀ), ପକୁରା (ଗଞ୍ଜାମ), ପଲ୍ଲୁର (ଜଳେଶ୍ୱର), ମନନ୍ଦ (ମହାନଦୀ), ତିନ୍ଦିସ (ବ୍ରାହ୍ମଣୀ), ଦୋସରମ (ବୈତରଣୀ) ଓ ଆଦମସ୍ (ସୁବର୍ଣ୍ଣରେଖା) ଥିଲା । ତତ୍କାଳୀନ କଳିଙ୍ଗ ଗଙ୍ଗାଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ପ୍ରାଚୀନ କଳିଙ୍ଗର ତାମ୍ରଲିପି ବନ୍ଦର (ତମ୍ଲୁକ୍) ଏବେ ପଶ୍ଚିମବଙ୍ଗରେ ଅବସ୍ଥିତ । 'ସିଉଳି' ନାମକ ବୌଦ୍ଧ ଗ୍ରନ୍ଥରୁ ଜଣାଯାଏ ଯେ, କଳିଙ୍ଗର ସମୁଦ୍ର ଉପକୂଳରେ ସେତେବେଳେ ଅନେକ ବନ୍ଦର ଥିଲା ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ରଚିତ ପୁସ୍ତକ Pery Pius of Erytheanseanରେ ଉଲ୍ଲେଖ ଅଛି ଯେ ତତ୍କାଳୀନ କଳିଙ୍ଗରେ ପ୍ରଚୁର ସୂକ୍ଷ୍ମବସ୍ତ୍ର ଓ ହାତୀଦାନ୍ତ ମିଳୁଥିଲା । ତତ୍କାଳୀନ ତାମ୍ରଲିପି ବନ୍ଦର ଏକ ପ୍ରଧାନ ବାଣିଜ୍ୟ କେନ୍ଦ୍ର ଥିଲା । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରୁ ପ୍ରତୀୟମାନ ହୁଏ ଯେ, ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସମୟରେ କଳିଙ୍ଗ ଜଙ୍ଗଲରେ ଅନେକ ହାତୀ ରହୁଥିଲେ । ସେଥିପାଇଁ ହାତୀଦାନ୍ତରେ ପ୍ରସ୍ତୁତ ବିଭିନ୍ନ ପ୍ରକାର ଦ୍ରବ୍ୟମାନ ଓ ପାଟବସ୍ତ୍ର ତତ୍କାଳୀନ ବ୍ୟବସାୟରେ ବହୁଳ ବ୍ୟବହାର ହେଉଥିବାର ଜଣାଯାଏ ।

ଓଡ଼ିଆ ବଣିକମାନେ ଓଡ଼ିଶାର ପାଟବସ୍ତ୍ର, ସୂକ୍ଷ୍ମ ପଟ୍ଟବସ୍ତ୍ର, ହାତୀଦାନ୍ତରେ ନିର୍ମିତ ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ ବିଭିନ୍ନ ଦ୍ରବ୍ୟମାନ ବୋଇତରେ ନେଇ ଚୀନ, ଜାଭା, ସୁମାତ୍ରା, ଶ୍ୟାମ ଓ ବୋର୍ଣ୍ଣିଓ ଆଦି ଦେଶମାନଙ୍କରେ ବାଣିଜ୍ୟ କରିବା ପୂର୍ବକ ପ୍ରଭୂତ ଧନମାନ ନିଜ ଦେଶକୁ ନେଇ ଆସୁଥିଲେ । ସେହିସବୁ ଦେଶମାନଙ୍କରୁ ମଣି, ମାଣିକ୍ୟ, ସୁନା, ରୂପା, ହୀରା, ନୀଳା ତଥା ଅନ୍ୟାନ୍ୟ ମୂଲ୍ୟବାନ ବସ୍ତୁମାନ ଓଡ଼ିଶାକୁ ଆଣି ଓଡ଼ିଶାର ଅର୍ଥନୈତିକ ମାନଦଣ୍ଡକୁ ବୃଦ୍ଧି କରିବାରେ ସମର୍ଥ ହୋଇଥିଲେ । ପ୍ରାଚୀନ କଳିଙ୍ଗର ଅଧିବାସୀଗଣ ଏକ ସୁ-ନୌବାହୀ ଜାତି ଭାବେ ସାମୁଦ୍ରିକ ବାଣିଜ୍ୟ ଏବଂ ସମୁଦ୍ର ଯାତ୍ରା କ୍ଷେତ୍ରରେ ଯେଉଁ ପାରଦର୍ଶିତା ହାସଲ କରିଥିଲେ, ତାହା ଭାରତ ଇତିହାସରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କରିବାରେ ସମର୍ଥ ହୋଇପାରିଥିଲା । ଆଧୁନିକ ଓଡ଼ିଶା ସେହି ପ୍ରାଚୀନ କଳିଙ୍ଗର ବିଶାଳ ବପୁର ବିଖଣ୍ଡିତ ସରହଦକୁ ନେଇ ଓଡ଼ିଆ ଜାତିର ମୂକସାକ୍ଷୀ ରୂପେ ଅତୀତ ଗୌରବ ଓ ଗାରିମାରେ ଗୌରବାନ୍ୱିତ । ସୁଦୀର୍ଘ ସମୁଦ୍ର ଉପକୂଳରେ ଉକ୍ତ ବିଶାଳ ସାମ୍ରାଜ୍ୟ ଅବସ୍ଥିତ ଥିବା ଦୃଷ୍ଟେ କଳିଙ୍ଗର ଅଧିବାସୀଗଣ ବଙ୍ଗୋପସାଗରର ସୁବିସ୍ତୀର୍ଣ୍ଣ ଅଞ୍ଚଳରେ ପ୍ରଭାବ ବିସ୍ତାର କରିବା ପୂର୍ବକ ନୌବାଣିଜ୍ୟ କ୍ଷେତ୍ରରେ ସୁପ୍ରସିଦ୍ଧି ଲାଭ କରିବାରେ ସମର୍ଥ ହୋଇଥିଲେ । ଦରିଆପାରି ବିଦେଶୀ ଭୂଇଁରେ ସେମାନେ ଉପନିବେଶମାନ ସ୍ଥାପନ କରିବା କଳିଙ୍ଗର ବ୍ୟବସାୟ, ବାଣିଜ୍ୟ, ଉନ୍ନତ କଳା, ଭାସ୍କର୍ଯ୍ୟ, ମହାନ ସଂସ୍କୃତି ତଥା ସଭ୍ୟତାର ପ୍ରଚାର ଓ ପ୍ରସାର କରିବାରେ ସମର୍ଥ ହୋଇପାରିଥିଲେ ।

ଦିଗ୍‌ବିଜୟୀ ସମ୍ରାଟ ଅଶୋକଙ୍କର ଆକ୍ରମଣ ବେଳକୁ ପ୍ରାଚୀନ କଳିଙ୍ଗର ଅମାପ ଐଶ୍ୱର୍ଯ୍ୟ, ପ୍ରତିଷ୍ଠା, ଶକ୍ତି, ଧନରାଶି ତଥା ସୁଦୂର ପ୍ରସାରୀ ନୌବାଣିଜ୍ୟ ହିଁ ଏହାର ସମକାଳୀନ ମଗଧ ସାମ୍ରାଜ୍ୟ ଲାଗି

ଈର୍ଷାର ମୁଖ୍ୟ କାରଣ ମାନ ଥିଲା । ସମୁଦ୍ର ଉପକଣ୍ଠସ୍ଥିତ ସୁନାବ୍ୟା ନଦୀ ସହ ବନ୍ଦରଗୁଡ଼ିକ କଳିଙ୍ଗ ଅଧିବାସୀଙ୍କର ସମୃଦ୍ଧ ନୌବାଣିଜ୍ୟ ନିମିତ୍ତ ସୁଯୋଗ ଓ ପ୍ରେରଣା ଯୋଗାଉଥିଲା ।

ସପ୍ତମ ଶତାବ୍ଦୀରେ ଚୀନ୍ ପରିବ୍ରାଜକ ହୁଏନ୍‌ସାଂ ତାଙ୍କ ଭ୍ରମଣ ବୃତ୍ତାନ୍ତରେ କଳିଙ୍ଗ (ଓଡ୍ର) ରାଜ୍ୟର ଚେଲିତାଲୋ ପୋତାଶ୍ରୟ ବିଷୟରେ ଉଲ୍ଲେଖ କରିଛନ୍ତି । ସମ୍ରାଟ ଖାରବେଳଙ୍କ ରାଜତ୍ୱକାଳରେ ହୋଇଥିବା ହାତୀଗୁମ୍ଫା ଶିଳାଲେଖରୁ 'ପିଥୁଣ୍ଡ' ନାମକ ଏକ ପ୍ରଧାନ ବନ୍ଦର କଳିଙ୍ଗ ରାଜ୍ୟରେ ଥିଲାବୋଲି ଜଣାପଡ଼େ ।

ପ୍ରାଚୀନ କଳିଙ୍ଗବାସୀଙ୍କର ଗୌରବୋଜ୍ଜ୍ୱଳ ତେଜୋଦୀପ୍ତ ଅମାପଶକ୍ତି ଓ ସାହସ ଅଧୁନା କାଳର କରାଳ ଗର୍ଭରେ ଲୀନ ହୋଇଯାଇଛି । ପୂର୍ବ ସ୍ମୃତିକୁ ମନେପକାଇ ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମା ପ୍ରତ୍ୟୁଷରେ ସମଗ୍ର ଓଡ଼ିଶାରେ ବୋଇତ ବନ୍ଦାଣ ଉତ୍ସବ ପାଳିତ ହୁଏ । କଦଳୀ ବାହୁଙ୍ଗାରେ ନିର୍ମିତ ଡଙ୍ଗାରେ ଦୀପ ଜାଳି ସେଥିରେ ପାନ, ଗୁଆ, ଯଅ ଓ ସୋରିଷ ଆଦିରଖି ଓଡ଼ିଶାର ଆବାଳ-ବୃଦ୍ଧ-ବନିତା ତାକୁ ନଦୀ, ପୁଷ୍କରିଣୀ, ହ୍ରଦ ବା ସମୁଦ୍ରର ଜଳବକ୍ଷରେ ମେଲାଣି ଦେବା ପୂର୍ବକ 'ଆ-କା-ମା-ବୈ, ପାନ ଗୁଆ ଥୋଇ, ପାନଗୁଆ ତୋର ମାସକ ଧର୍ମ ମୋର' ଉଚ୍ଚାରଣ କରିଥାନ୍ତି । ଆଦିକବି ସାରଳା ଦାସଙ୍କ ବିରଚିତ ମହାଭାରତ ମହାକାବ୍ୟର ଆଦିପର୍ବରେ ଉଲ୍ଲେଖ ଥିବାର ଜଣାଯାଏ ଯେ ଏହି ବୋଇତ ବନ୍ଦାଣ ଉତ୍ସବ ପ୍ରାଚୀନ କଳିଙ୍ଗର ଜଳଯାତ୍ରା - ସ୍ମୃତି ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ତେଣୁ କବି ଗାଇଛନ୍ତି -

'କାର୍ତ୍ତିକ ମାସ ଶୁକ୍ଳପକ୍ଷ ବୁଧବାର ଯେ ପୂର୍ଣ୍ଣମୀ
ଆ-କା-ମା-ବୈ ସ୍ନାନ ଦିନ ଗଙ୍ଗାକୁ ଗଲେ କୁନ୍ତଭୋଜ ସ୍ୱାମୀ
ସେହି ଗଙ୍ଗା ସ୍ନାହାନକୁ ଭୀଷ୍ମ ଯେ ଅଇଲେ,
କୁନ୍ତଭୋଜ ରାଜା ସଂଗେ ମଇତ୍ର ହୋଇଲେ ।'

ପ୍ରାଚୀନ କଳିଙ୍ଗର ନୌବାଣିଜ୍ୟର ସ୍ମୃତିଚାରଣ ନିମିତ୍ତ ଓଡ଼ିଶାର ବରପୁତ୍ର ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଓଡ଼ିଶା ସରକାର ୧୯୯୨ ମସିହା ନଭେମ୍ବର ମାସ ୧୦ ତାରିଖ କାର୍ତ୍ତିକ ପୂର୍ଣ୍ଣିମା ଦିନ ପାରାଦ୍ୱୀପ ବନ୍ଦରରୁ ଏକ ଐତିହାସିକ ନୌଯାତ୍ରାର ଶୁଭାରମ୍ଭ କରିଥିଲେ । ଭାରତୀୟ ନୌବାହିନୀର ଜାହାଜ ଆଇ.ଏନ୍.ଏସ୍. 'ସମୁଦ୍ର' କାର୍ତ୍ତିକ ପୂର୍ଣ୍ଣିମା ଦିନ ସକାଳରୁ ବାଲିଦ୍ୱୀପ ଅଭିମୁଖେ ସାତ ଜଣ ନୌ-ଅଭିଯାତ୍ରୀଙ୍କୁ ଧାରଣ କରି ଯାତ୍ରା ଆରମ୍ଭ କରିଥିଲା । ଏହି ଯାତ୍ରାରେ ଜଣେ ଉତ୍କଳୀୟ ସ୍ଥାନ ପାଇଥିଲେ । ପାରାଦ୍ୱୀପ ବନ୍ଦରରୁ ଏହି ଯାତ୍ରା ଆରମ୍ଭ ହୋଇ ଗୋପାଳପୁର ବନ୍ଦର ବାଟଦେଇ ଭାଇଜାଗ୍, ମାନ୍ଦ୍ରାଜ, କାମ୍ପବେଲ୍, ବେ-ଅଫ୍-ନିକୋବର, ଥାଇଲାଣ୍ଡ, ବେଦାଙ୍ଗ ଏବଂ ଇଣ୍ଡୋନେସିଆର ଜାକର୍ତ୍ତା ଓ ସୁରଭାୟା ଆଦି ବନ୍ଦର ଦେଇ ଉକ୍ତ ଜାହାଜ ବାଲିଦ୍ୱୀପରେ ପହଞ୍ଚିଥିଲା । ୧୯୯୩ ମସିହା ଜାନୁଆରୀ ୩୧ ତାରିଖ ଦିନ ନୌ-ଅଭିଯାତ୍ରୀମାନଙ୍କୁ ସମ୍ବର୍ଦ୍ଧନା ଦେବା ସହିତ ଏକ ଉତ୍ସବ ଅନୁଷ୍ଠିତ ହୋଇଥିଲା । ତତ୍ ସଙ୍ଗେ ସଙ୍ଗେ ଓଡ଼ିଶା ଉତ୍ସବ ଉଦ୍‌ଘାଟିତ ହୋଇଥିଲା ।

ସମୁଦ୍ର ନୌଯାତ୍ରା ସବୁବେଳେ ନିରାପଦ ନଥିଲା । ସମୟ ସମୟରେ ଜଳଦସ୍ୟୁମାନେ ନୌକାଲୁଟି କରୁଥିଲେ । କେତେବେଳେ ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହୋଇ ନୌ-ଯାତ୍ରୀଗଣ ଗତିପଥ ବିଚ୍ୟୁତ ହେଉଥିଲେ । ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଶାସନ କ୍ଷେତ୍ରରେ ଅସ୍ଥିରାବସ୍ଥା, ଅତ୍ୟାଚାର, ରାଜ୍ୟ ମଧ୍ୟରେ ଜୀବନଯାତ୍ରାର ଅଚଳ ଅବସ୍ଥା, ଲୁଣ୍ଠନ, ରାହାଜାନୀ ସହିତ ସାଗର ମଧ୍ୟରେ ସାଗର ଦସ୍ୟୁମାନଙ୍କ ଆକ୍ରମଣରେ ଓଡ଼ିଆ ସାଧବର ବଣିଜତରୀ ପୂର୍ବବତ ସାଗରର ନୀଳ ଜଳରାଶିରେ ଆଗେଇ ପାରିଲା ନାହିଁ । ଦସ୍ୟୁ ମରହଟ୍ଟାବର୍ଗୀମାନଙ୍କ ଆକ୍ରମଣ ଭୟରେ କଳିଙ୍ଗର ସାଧବପୁଅମାନେ ବୋଇତରେ ବେପାର ବଣିଜ କରିବା ପାଇଁ ଆଉ ଲାଭଦାୟକ ମନେ କଲେ ନାହିଁ । ପରବର୍ତ୍ତୀ ସମୟରେ ଇଷ୍ଟଇଣ୍ଡିଆ କମ୍ପାନୀର ବାଣିଜ୍ୟପୋତ କଳିଙ୍ଗ ସାଧବପୁଅମାନଙ୍କର ବାଣିଜ୍ୟିକ ଅଧିକାରକୁ ଅପହରଣ କରିନେଲେ । ବୋଇତ ସାହାଯ୍ୟରେ ବେପାର ବଣିଜ କରିବା କଳିଙ୍ଗରୁ କାଳକ୍ରମେ ଲୋପ ପାଇଲା ।

ପ୍ରାଚୀନ କଳିଙ୍ଗର କାଳଜୟୀ ନୌଯାତ୍ରା, ଗୌରବ ବିମଣ୍ଡିତ ସାମୁଦ୍ରିକ ନୌବାଣିଜ୍ୟ ଓ ବହିର୍ବାଣିଜ୍ୟର ପରମ୍ପରା ଆଜି ମଧ୍ୟ ବିଶ୍ୱବନ୍ଦନୀୟ । ତତ୍କାଳୀନ ସମୟରେ କଳିଙ୍ଗ ଜାତି ଓ ଜୀବନର ଦୁର୍ଦ୍ଧର୍ଷ ପଣିଆ ହିଁ ସମଗ୍ର ପୃଥିବୀରେ 'କଳିଙ୍ଗାଃ ସାହସିକାଃ' ରୂପେ ପରିଗଣିତ ହୋଇପାରିଥିଲା ।

ପ୍ଲଟ ନଂ- ୫୪୪/୯୯୭
ପୋଖରୀପୁଟ, ଭୁବନେଶ୍ୱର

# ଗୋପବନ୍ଧୁ ଗ୍ରାମୀଣ ଯୋଜନା

ହେମନ୍ତ କୁମାର ନାୟକ

ଗୋପବନ୍ଧୁ ଗ୍ରାମୀଣ ଯୋଜନା ରାଜ୍ୟ ସରକାରଙ୍କ ଏକ ଯୁଗୋପଯୋଗୀ ପଦକ୍ଷେପ କହିଲେ ଅତ୍ୟୁକ୍ତି ହେବ ନାହିଁ । ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଏହି ଯୋଜନାକୁ ଇତିମଧ୍ୟରେ ଅନୁମୋଦନ କରିବା ପରେ ଗୋପବନ୍ଧୁ ଗ୍ରାମୀଣ ଯୋଜନାର ରିଜୁଲୋସନ୍ ନମ୍ବର ଡି.ପି.ସି.- ୯୪/୦୬/୧୩୫୯୭/ପି.୨୮.୦୯.୦୬ ତାରିଖରେ ପ୍ରକାଶ ପାଇଛି ।

ପଛୁଆ ଅଞ୍ଚଳ ଅନୁଦାନ ପାଣ୍ଠି ପାଉ ନଥିବା ଅତିରିକ୍ତ ସହାୟତା ବ୍ୟବସ୍ଥା କରିବା ପାଇଁ ସରକାର ଗୋପବନ୍ଧୁ ଗ୍ରାମୀଣ ଯୋଜନାର ନିକଟରେ ଶୁଭାରମ୍ଭ କରିଛନ୍ତି । ଏହି ଯୋଜନା ୨୦୦୬-୦୭ ଆର୍ଥିକ ବର୍ଷରୁ କାର୍ଯ୍ୟକାରୀ କରାଯାଇ ୨୦୦୭-୦୮ରୁ ୨୦୧୧-୧୨ ପର୍ଯ୍ୟନ୍ତ ଏକାଦଶ ପଞ୍ଚବାର୍ଷିକ ଯୋଜନାରେ ମଧ୍ୟ କାର୍ଯ୍ୟକାରୀ ହେବ । ରାଜ୍ୟର ଅନୁଗୋଳ, ବାଲେଶ୍ୱର, ବରଗଡ଼, ଭଦ୍ରକ, କଟକ, ଯାଜପୁର, ଜଗତସିଂହପୁର, କେନ୍ଦ୍ରାପଡ଼ା, ଖୋର୍ଦ୍ଧା, ନୟାଗଡ଼ ଏବଂ ପୁରୀ ଜିଲ୍ଲାରେ ଗୋପବନ୍ଧୁ ଗ୍ରାମୀଣ ଯୋଜନା କାର୍ଯ୍ୟକାରୀ ହେବ ।

**ଗୋପବନ୍ଧୁ ଗ୍ରାମୀଣ ଯୋଜନାର ଉଦ୍ଦେଶ୍ୟ :**

ରାଜ୍ୟର ୧୧ ଗୋଟି ଚିହ୍ନିତ ଜିଲ୍ଲାର ପ୍ରତ୍ୟେକ ରାଜସ୍ୱ ଗ୍ରାମକୁ ଅତିରିକ୍ତ ଉନ୍ନୟନ ପାଣ୍ଠି ଦ୍ୱାରା ପ୍ରାଥମିକ ଭାବେ ବିଜୁଳି, ସଡ଼କ ଏବଂ ପାନୀୟ ଜଳର ଭିତ୍ତିଭୂମି ବିକାଶ ଏହି ଯୋଜନାର ପ୍ରମୁଖ ଉଦ୍ଦେଶ୍ୟ । କେତେକ ସ୍ୱତନ୍ତ୍ର ପ୍ରକଳ୍ପ ଯଥା : କଂକ୍ରିଟ/ପିଚୁ ରାସ୍ତା ନିର୍ମାଣ କରି ନିକଟସ୍ଥ ଗ୍ରାମରେ କରାଯାଇଥିବା ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନା (ପି.ଏମ୍.ଜି.ଏସ୍.ୱାଇ.)ର କଂକ୍ରିଟ୍ ରାସ୍ତା ସହ ସଂଯୋଗ କିମ୍ବା ଓଡ଼ିଶା ଉନ୍ନୟନ ରାସ୍ତା (ଓ.ଡି.ଆର୍.) ସହ ସଂଯୋଗ ସ୍ଥାପନ, ଗ୍ରାମ ଭିତରେ ରାସ୍ତା ଆଲୁଅ (ଯାହାକି ସଂପୃକ୍ତ ଗ୍ରାମ ପଞ୍ଚାୟତ ଦ୍ୱାରା ରକ୍ଷଣାବେକ୍ଷଣ କରାଯିବ), ପାନୀୟ ଜଳ ଯୋଗାଣ ବ୍ୟବସ୍ଥା ଏବଂ ଜଳସେଚନ ଉତ୍ସ ସୃଷ୍ଟି ଭଳି କେତେକ ସ୍ୱତନ୍ତ୍ର ପ୍ରକଳ୍ପ ଏହି ଯୋଜନା ମାଧ୍ୟମରେ ଅନ୍ତର୍ଭୁକ୍ତ କରାଯାଇପାରିବ ।

ଏହି ଯୋଜନାରେ ବ୍ୟବସ୍ଥା କରାଯାଇଥିବା ଅତିରିକ୍ତ ଉନ୍ନୟନ ପାଣ୍ଠି ଅନୁବନ୍ଧିତ ଏବଂ ଅତିରିକ୍ତ ରାଶି ଯାହାକି ପୂର୍ବରୁ ଏହିସବୁ କ୍ଷେତ୍ରରେ ବ୍ୟବସ୍ଥିତ ତାହା ବିଭିନ୍ନ ବିକାଶମୂଳକ କାର୍ଯ୍ୟକ୍ରମ ପାଇଁ ସଂଯୁକ୍ତ ହୋଇ ଏକାଭିମୁଖିତା ବୃଦ୍ଧି କରାଇବାରେ ସହାୟକ ହେବ ।

**ପାଣ୍ଠି ବ୍ୟବସ୍ଥା**

ପ୍ରତ୍ୟେକ ଜିଲ୍ଲାକୁ ବାର୍ଷିକ ୧୦ କୋଟି ଟଙ୍କା ହିସାବରେ ଅତିରିକ୍ତ ଉନ୍ନୟନ ସହାୟତା ୨୦୦୬-୦୭ ଆର୍ଥିକ ବର୍ଷରୁ ୨୦୧୧-୧୨ ଆର୍ଥିକ ବର୍ଷ ପର୍ଯ୍ୟନ୍ତ ସମୁଦାୟ ୬ ବର୍ଷ ପାଇଁ ବ୍ୟବସ୍ଥା କରାଯିବ ।

**ଜି.ଜି.ୱାଇ. କାର୍ଯ୍ୟକାରିତା ପ୍ରଣାଳୀ :**

୧. ଓଡ଼ିଶା ସରକାରଙ୍କ ପଞ୍ଚାତିରାଜ ବିଭାଗ ଗୋପବନ୍ଧୁ ଗ୍ରାମୀଣ ଯୋଜନା କାର୍ଯ୍ୟକାରୀ କରିବାରେ ପ୍ରମୁଖ ବିଭାଗ ଭାବେ କାର୍ଯ୍ୟ କରିବ ଏବଂ ୨୦୦୬-୦୭ ଆର୍ଥିକ ବର୍ଷରୁ ଏକାଦଶ ପଞ୍ଚବାର୍ଷିକ ଯୋଜନା ସମାପ୍ତି ପର୍ଯ୍ୟନ୍ତ ପ୍ରତିବର୍ଷ ଉପଯୁକ୍ତ ପାଣ୍ଠି ବ୍ୟବସ୍ଥା ବିଭିନ୍ନ ହିସାବ ମୁଖ୍ୟ (Head of Account)ରେ ସ୍ଥାନିତ କରିବ ।

୨. ଗୋପବନ୍ଧୁ ଗ୍ରାମୀଣ ଯୋଜନା ଭାବେ ଏଗାର ଗୋଟି ଚିହ୍ନିତ ଜିଲ୍ଲାଗୁଡ଼ିକରେ ପ୍ରତି ରାଜସ୍ୱ ଗ୍ରାମରୁ ବିଜୁଳି, ସଡ଼କ ଏବଂ ପାନୀୟ ଜଳ ବ୍ୟବସ୍ଥା ନିମନ୍ତେ ଭିତ୍ତିଭୂମିର ବିକାଶ କରିବ । ଏହି ଉଦ୍ଦେଶ୍ୟ ପାଇଁ ପ୍ରତି ଗ୍ରାମକୁ ପାଣ୍ଠି ନିମ୍ନମତେ ଯୋଗାଇ ଦିଆଯିବ -

କ. ଗ୍ରାମର ଲୋକସଂଖ୍ୟା ୫୦୦ରୁ କମ୍ ହେଲେ ୨ ଲକ୍ଷ ଟଙ୍କା

ଖ. ୫୦୦ରୁ ଅଧିକ ଓ ୧୦୦୦ରୁ କମ୍ ଲୋକସଂଖ୍ୟା ବିଶିଷ୍ଟ ଗ୍ରାମକୁ ୩ ଲକ୍ଷ ଟଙ୍କା ଏବଂ

ଗ. ଗ୍ରାମର ଲୋକସଂଖ୍ୟା ୧୦୦୦ରୁ ଅଧିକ ହେଲେ ୫ ଲକ୍ଷ ଟଙ୍କା ଲେଖାଏଁ ପାଣ୍ଠି ଅନୁଦାନ ଦିଆଯିବ ।

ଏହି ଯୋଜନା କାର୍ଯ୍ୟକାରିତା ପାଇଁ ୧୯୯୧ ମସିହାର ଜନଗଣନାକୁ ମାପକାଠି ହିସାବରେ ଗ୍ରହଣ କରାଯିବ ଏବଂ ଏକାଦଶ ପଞ୍ଚବାର୍ଷିକ ଯୋଜନା ଶେଷ ସୁଦ୍ଧା ପ୍ରତି ରାଜସ୍ୱ ଗ୍ରାମକୁ ପର୍ଯ୍ୟାୟକ୍ରମେ ଅନ୍ତର୍ଭୁକ୍ତ କରାଯିବ ।

୩. ଚିହ୍ନିତ ଗ୍ରାମର ଗ୍ରାମସଭା ଗ୍ରାମର ପ୍ରକଳ୍ପଗୁଡ଼ିକ ଚିହ୍ନଟ କରିବା ସହିତ ଉପରଲିଖିତ ପାରା ଅନୁଯାୟୀ ସର୍ବୋଚ୍ଚସୀମା ଉଲ୍ଲଖିତ କରିବ । ଅନ୍ୟାନ୍ୟ ସୂତ୍ର ଯଥା- ଏସ୍.ଜି.ଆର୍.ୱାଇ. ଫାଇନାନ୍ସ କମିଶନ ଆୱାର୍ଡ଼ ଇତ୍ୟାଦିରୁ ମିଳିଥିବା ପାଣ୍ଠିକୁ ମଧ୍ୟ ଉପଯୋଗ କରାଯାଇପାରିବ । ଗ୍ରାମମାନଙ୍କର ଆର୍ଥିକ ଅନୁଦାନ ଏ କ୍ଷେତ୍ରରେ ସ୍ୱାଗତ କରାଯିବ ।

୪. ଗ୍ରାମସଭା ଦ୍ୱାରା ପ୍ରସ୍ତାବଗୁଡ଼ିକ ଅନୁମୋଦନ ହେବା ପରେ ବ୍ଲକ୍‌ରେ ସଂକଳନ (Compile) କରାଯିବ ଏବଂ ଜିଲ୍ଲାସ୍ତରୀୟ କମିଟିର ଅନୁମୋଦନ ନିମନ୍ତେ ପ୍ରସ୍ତାବଗୁଡ଼ିକ ପେଶ୍ କରାଯିବ । ଜିଲ୍ଲାସ୍ତରୀୟ କମିଟି ଜିଲ୍ଲାପାଳଙ୍କ ଅଧକ୍ଷତାରେ ଜିଲ୍ଲାର ସମସ୍ତ ସାଂସଦ, ବିଧାୟକ ଏବଂ ଜିଲ୍ଲା ପରିଷଦ ଅଧକ୍ଷଙ୍କୁ ନେଇ ଗଠନ କରାଯିବ । ଗ୍ରାମ ଓ ଯୋଜନାଗୁଡ଼ିକ ବଛାଯିବା ସମୟରେ ଜିଲ୍ଲାସ୍ତରୀୟ କମିଟି ସମ୍ବଳର ପ୍ରକୃତ ଉପଯୋଗ ଏବଂ ଚିରସ୍ଥାୟୀ ସମ୍ପତ୍ତି ଆହରଣ ନିମନ୍ତେ ସୁନିଶ୍ଚିତ କରାଯିବ ।

୫. ପ୍ରକଳ୍ପଗୁଡ଼ିକ ମଞ୍ଜୁରୀ ପାଇବା ପରେ ବି.ଡି.ଓ.ଙ୍କ ଦ୍ୱାରା ହିସାବ ଅଟକଳ ଏହି ପ୍ରକଳ୍ପଗୁଡ଼ିକ ପାଇଁ ପ୍ରସ୍ତୁତ କରାଯିବ, ଯାହାକି ଆର୍ଥିକ ଅନୁଦାନକୁ ଏକ ନିର୍ଦ୍ଦିଷ୍ଟ ବର୍ଷ ପାଇଁ ଦୃଷ୍ଟିରେ ରଖି କରାଯିବ । ଏହି ପ୍ରକ୍ରିୟାର ପ୍ରତିବର୍ଷ ପୁନରାବୃତ୍ତି କରାଯାଇପାରେ । ହିସାବ ଅଟକଳ ପ୍ରସ୍ତୁତି ସମୟରେ ବି.ଡି.ଓ., ବ୍ଲକ୍‌ର ସହକାରୀ ଯନ୍ତ୍ରୀ, ବିଦ୍ୟୁତ୍ ଯନ୍ତ୍ରୀ କିମ୍ବା ଜଳସମ୍ପଦ ବିଭାଗର ସମ୍ପୃକ୍ତ ପ୍ରକଳ୍ପ ଅନ୍ତର୍ଗତ ଯନ୍ତ୍ରୀଙ୍କ ସହାୟତା ନେଇପାରିବେ । ଏହି ପ୍ରକଳ୍ପଗୁଡ଼ିକର ପ୍ରଶାସନିକ ସୀମା ଏବଂ ବୈଷୟିକ ମଞ୍ଜୁରୀ ସେହିପରି ଚାଲୁ ଯୋଜନାଗୁଡ଼ିକ ସହ ସମାନ । ଗୋପବନ୍ଧୁ ଗ୍ରାମୀଣ ଯୋଜନା ପ୍ରକଳ୍ପଗୁଡ଼ିକର ଓଡ଼ିଶା ସରକାରଙ୍କର ଆର୍ଥିକ ନିୟମ ଏବଂ ଓ.ପି.ଡବ୍ଲୁ.ଡି. କୋଡ୍ ଲାଗୁ କରାଯିବ ।

୬. ରାଜ୍ୟର ୧୧ଟି ଚିହ୍ନିତ ଜିଲ୍ଲାର ଜିଲ୍ଲା ଯୋଜନା ଦ୍ୱାରା ଏହି ଯୋଜନାର କାର୍ଯ୍ୟ ନିର୍ବାହ କରାଯିବ । ଗୋପବନ୍ଧୁ ଗ୍ରାମୀଣ ଯୋଜନାର ପ୍ରକଳ୍ପଗୁଡ଼ିକ ଜିଲ୍ଲା ଯୋଜନା ଅନ୍ତର୍ଗତ ଅନ୍ୟାନ୍ୟ ଯୋଜନା ଯଥା- ସ୍ୱଜଳଧାରା, ବିଜୁ କୃଷକ ବିକାଶ ଯୋଜନା, ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତକରଣ ଯୋଜନା, ପ୍ରଧାନମନ୍ତ୍ରୀ ଗ୍ରାମ୍ୟ ସଡ଼କ ଯୋଜନା ଇତ୍ୟାଦି ସହ ଏକାଭିମୁଖିତା ରକ୍ଷା ନିମନ୍ତେ ସମନ୍ୱୟ ରକ୍ଷା କରିବ । ଏହାକୁ କାର୍ଯ୍ୟକାରିତା କରିବା ସମୟରେ ନିମ୍ନଲିଖିତ ବିଷୟଗୁଡ଼ିକ ପ୍ରତି ଦୃଷ୍ଟି ଦେବାକୁ ହେବ ।

କ. ୧୦୦୦ରୁ ଅଧିକ ଲୋକସଂଖ୍ୟା ବିଶିଷ୍ଟ ଗ୍ରାମରେ ସର୍ବଶିକ୍ଷା ଅଭିଯାନ ପାଣ୍ଠିରେ ୫ ଲକ୍ଷ ଟଙ୍କା ବ୍ୟୟରେ ଗାଁ ସ୍କୁଲରେ ଏକ ବହୁମୁଖୀ ସଭାଗୃହର ନିର୍ମାଣ କରାଯାଇପାରେ । ସଭାଗୃହର ଗୋଟିଏ ପାର୍ଶ୍ୱ ପେଣ୍ଡାଲ୍ ଭାବେ ବ୍ୟବହାର ନିମନ୍ତେ ବ୍ୟବସ୍ଥା କରାଯାଇପାରେ । ଏହି ସଭାଗୃହ, ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ସ୍ୱତନ୍ତ୍ର ବକ୍ତୃତା କିମ୍ବା ସଭା ନିମନ୍ତେ ବ୍ୟବହାର କରାଯିବ । ଗ୍ରାମବାସୀଙ୍କ ସମୂହ ବ୍ୟବହାର ନିମନ୍ତେ ବିଦ୍ୟାଳୟ ଛୁଟି ସମୟରେ ବ୍ୟବହୃତ କରାଯାଇପାରେ । ବିଦ୍ୟାଳୟ କମିଟି ସଭାଗୃହ ନିମନ୍ତେ ଏକ ଉପଯୁକ୍ତ ଫିସ୍ ଆଦାୟ କରି ବିଦ୍ୟାଳୟର ରକ୍ଷଣାବେକ୍ଷଣ ସହ ବିଦ୍ୟାଳୟର ଅନ୍ୟାନ୍ୟ ବିକାଶମୂଳକ କାର୍ଯ୍ୟ କରିପାରିବ ।

ଖ. ଯେଉଁ ବ୍ଲକ୍‌ଗୁଡ଼ିକରେ ଶତକଡ଼ା ୩୫ ଭାଗରୁ କମ୍ ଜଳସେଚନ ସୁବିଧା ଥିବ, ବିଜୁ କୃଷକ ବିକାଶ ଯୋଜନାରେ ଏକ ସ୍ୱତନ୍ତ୍ର ପଦକ୍ଷେପ ନିଆଯାଇ ଜଳସେଚନ ପ୍ରକଳ୍ପ କାର୍ଯ୍ୟକୁ ତ୍ୱରାନ୍ୱିତ କରାଯାଇପାରେ । ଏହି ପ୍ରକଳ୍ପଗୁଡ଼ିକରେ ଉଠାଜଳସେଚନ ପଏଣ୍ଟ, ଗଭୀର ନଳକୂପ ପ୍ରକଳ୍ପ ଇତ୍ୟାଦି ଅନ୍ତର୍ଭୁକ୍ତ କରାଯାଇପାରେ, ଯେପରିକି ଏଗୁଡ଼ିକର କାର୍ଯ୍ୟକାରିତା ସମ୍ପୂର୍ଣ୍ଣଭାବେ ଦୃଷ୍ଟିରେ ରଖିବା ଆବଶ୍ୟକ । ୧୦୦୦ରୁ ଅଧିକ ଲୋକସଂଖ୍ୟା ବିଶିଷ୍ଟ ଗ୍ରାମଗୁଡ଼ିକୁ ଏ କ୍ଷେତ୍ରରେ ଅଧିକ ସୁଯୋଗ ଦିଆଯାଇପାରେ । ଏସବୁ କ୍ଷେତ୍ରରେ ହରିଜନ ଓ ଆଦିବାସୀ ବାସ କରୁଥିବା ଗ୍ରାମଗୁଡ଼ିକର ପ୍ରାଥମିକତା ଲୋକସଂଖ୍ୟାକୁ ଦୃଷ୍ଟିରେ ନରଖି ନିଆଯାଇପାରେ । ଯେଉଁଥିପାଇଁ ଏମ୍.ଏ.ଡି.ଏ., ଆଦିବାସୀ ଓ ହରିଜନ ଉନ୍ନୟନ ନିଗମ, ଆଇ.ଟି.ଡି.ଏ., ଇତ୍ୟାଦିରୁ ପାଣ୍ଠି ଉପଯୋଗ କରାଯାଇପାରେ ।

୭. ପଞ୍ଚାୟତିରାଜ ବିଭାଗ ଦ୍ୱାରା ଦୁଇ କିସ୍ତିରେ ଅର୍ଥ ସମ୍ପୃକ୍ତ ଜିଲ୍ଲାପାଳଙ୍କୁ ସିଧାସଳଖ ଦିଆଯିବ ଏବଂ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ କର୍ତ୍ତୃପକ୍ଷ ଏହି ଅର୍ଥ ପାଇଁ ଏକ ଅଲଗା ହିସାବ ମୁଖ୍ୟ (Head of Account) ଚାଲୁ ରଖିବେ । ସମ୍ପୃକ୍ତ ଜିଲ୍ଲାର ପ୍ରକଳ୍ପ ନିର୍ଦ୍ଦେଶକ ଏହି ଯୋଜନାର ଉଠାଣ ଓ ବିତରଣ ଅଧିକାରୀ ଭାବେ କାର୍ଯ୍ୟ କରିବେ ।

୮. ପଞ୍ଚାୟତିରାଜ ବିଭାଗରୁ ଅର୍ଥ ପାଇବାର ୧୫ ଦିନ ଭିତରେ ଜିଲ୍ଲାପାଳ କାର୍ଯ୍ୟକାରୀ ଏଜେନ୍ସିକୁ ଅର୍ଥ ପ୍ରଦାନ କରିବେ । ଜିଲ୍ଲାପାଳ ଓ ପ୍ରକଳ୍ପ ନିର୍ଦ୍ଦେଶକ, ଜିଲ୍ଲା ଗ୍ରାମ୍ୟ ଉନ୍ନୟନ କର୍ତ୍ତୃପକ୍ଷ ସିଧାସଳଖ ଭାବେ ଏହି ଯୋଜନାର ସଫଳ ଏବଂ ସମୟାନୁବର୍ତ୍ତୀ ରୂପାୟନ ନିମନ୍ତେ ଦାୟୀ ରହିବେ । ଜିଲ୍ଲାପାଳ ଏହି ଯୋଜନାର ମାସିକ ପ୍ରଗତି ରିପୋର୍ଟ (ଏମ୍.ପି.ଆର୍.) ଅର୍ଥ ଏବଂ ଯୋଜନାର ପ୍ରକୃତ ପ୍ରଗତିର କାର୍ଯ୍ୟ ବିବରଣୀ ପଞ୍ଚାୟତିରାଜ ବିଭାଗକୁ ପ୍ରଦାନ କରିବେ ।

**ରାଜ୍ୟସ୍ତରୀୟ କାର୍ଯ୍ୟକାରୀ କମିଟି (ଏସ୍.ଏଲ୍.ଏସ୍.ସି.) :**

ରାଜ୍ୟ ମୁଖ୍ୟ ସଚିବଙ୍କ ଅଧକ୍ଷତାରେ ଏକ ରାଜ୍ୟସ୍ତରୀୟ କାର୍ଯ୍ୟକାରୀ କମିଟି ଗଠନ କରାଯାଇ ଏହି ଯୋଜନାର ପ୍ରକୃତ ଉପଯୋଗ, ଉପଦେଶ ଓ ମୂଲ୍ୟାୟନ ନିମନ୍ତେ ଉତ୍ତରଦାୟୀ ରହିବ । ରାଜ୍ୟସ୍ତରୀୟ କାର୍ଯ୍ୟକାରୀ କମିଟି ନିମ୍ନଲିଖିତ ଉଚ୍ଚପଦସ୍ଥ ଅଧିକାରୀ ଓ ମନୋନୀତ ସଦସ୍ୟ, ସଦସ୍ୟାଙ୍କୁ ନେଇ ଗଠନ କରାଯିବ ।

କ. ମୁଖ୍ୟ ଶାସନ ସଚିବ - ଅଧ୍ୟକ୍ଷ

ଖ. ଉନ୍ନୟନ କମିଶନର ତଥା ଅତିରିକ୍ତ ମୁଖ୍ୟ ଶାସନ ସଚିବ - ସଦସ୍ୟ

ଗ. କୃଷି ଉତ୍ପାଦନ କମିଶନର ତଥା ଅତିରିକ୍ତ ମୁଖ୍ୟ ଶାସନ ସଚିବ - ସଦସ୍ୟ

ଘ. ଅର୍ଥ ବିଭାଗ ପ୍ରମୁଖ ଶାସନ ସଚିବ - ସଦସ୍ୟ

ଙ. ଯୋଜନା ଏବଂ ସମନ୍ୱୟ ବିଭାଗର ସ୍ୱତନ୍ତ୍ର ସଚିବ (ପ୍ରକଳ୍ପ) - ସଦସ୍ୟ

ଚ. ବେସରକାରୀ ସଂସ୍ଥା କିମ୍ବା ବେସରକାରୀ ସାମାଜିକ ଅନୁଷ୍ଠାନର ଜଣେ ମନୋନୀତ ବ୍ୟକ୍ତି - ସଦସ୍ୟ

ଛ. ପଞ୍ଚାୟତିରାଜ ବିଭାଗର ସଚିବ - ସଦସ୍ୟ ସଚିବ

ରାଜ୍ୟସ୍ତରୀୟ କାର୍ଯ୍ୟକାରୀ କମିଟିର ଅଧ୍ୟକ୍ଷଙ୍କର ଯେକୌଣସି ଅଧିକାରୀ, କର୍ତ୍ତୃପକ୍ଷ କିମ୍ବା ବେସରକାରୀ ସାମାଜିକ ସଂସ୍ଥାକୁ କମିଟିର ବୈଠକକୁ ନିମନ୍ତ୍ରଣ କରିପାରିବାର କ୍ଷମତା ରହିବ । ଏହି କମିଟି ଏହାର କାର୍ଯ୍ୟକାରିତା ପାଇଁ ନିଜସ୍ୱ କାର୍ଯ୍ୟ ନିୟମାବଳୀ (Rules of Business) ପ୍ରସ୍ତୁତ କରିବା ପାଇଁ ନିଷ୍ପତ୍ତି ନେଇପାରିବେ ।

**ଜିଲ୍ଲା ଯୋଜନା ପ୍ରସ୍ତୁତିକରଣ :**

ଭାରତର ଯୋଜନା କମିଶନଙ୍କ ପତ୍ର ସଂଖ୍ୟା ୧୩୦୧୧/୧/୨୦୦୬/SP-Co. ତା.୨୫.୦୮.୨୦୦୬ ଯାହାକି ସମସ୍ତ ଜିଲ୍ଲାପାଳଙ୍କୁ ରାଜ୍ୟ ଯୋଜନା ଓ ସମନ୍ୱୟ ବିଭାଗ ପତ୍ରସଂଖ୍ୟା ୧୨୧୮୯(୩୦)/P, ତା.୪.୦୯.୦୬ ଅନୁଯାୟୀ ପ୍ରସାରଣ କରାଯାଇଛି । ଜିଲ୍ଲାଯୋଜନା ଏକାଦଶ ପଞ୍ଚବାର୍ଷିକ ଯୋଜନା ମୁତାବକ ନିଜର ପଥ ପ୍ରଦର୍ଶକ (Guideline) ପ୍ରସ୍ତୁତ କରିବ ଏବଂ ଯୋଜନା ଓ ସମନ୍ୱୟ ବିଭାଗ ଏ ସଂପର୍କରେ ସମୟକ୍ରମେ ସବିଶେଷ ଉଲ୍ଲେଖ କରିବ ।

ଗୋପବନ୍ଧୁ ଗ୍ରାମୀଣ ଯୋଜନା ନିମ୍ନଲିଖିତ ମୁଖ୍ୟ ନିୟମାବଳୀ ଜିଲ୍ଲା ଯୋଜନା ପ୍ରସ୍ତୁତି ଓ କାର୍ଯ୍ୟକାରିତା ସମୟରେ ବିଚାରକୁ ନିଆଯିବ,

କ. ରାଜ୍ୟ ଯୋଜନା, କେନ୍ଦ୍ରୀୟ ପ୍ରାୟୋଜିତ ଯୋଜନା, କେନ୍ଦ୍ର ଯୋଜନା ସମୂହ, ବାହ୍ୟ ଅନୁଦାନ ପ୍ରକଳ୍ପ ଏବଂ ଅନ୍ୟ କୌଣସି ସୂତ୍ରରୁ ବିକାଶମୂଳକ କାର୍ଯ୍ୟ ପାଇଁ ମିଳିଥିବା ପାଣ୍ଠିକୁ ସର୍ବମୋଟ କରାଯାଇ ଜିଲ୍ଲା ଯୋଜନାର ସମ୍ବଳ ବ୍ୟବସ୍ଥା କରାଯିବ ।

ଖ. ଉପରଲିଖିତ ଧାରା-୫ ମୁତାବକ ଏହି ଯୋଜନାର ପାଣ୍ଠି ଅତିରିକ୍ତ ଯୋଜନା ଅର୍ଥ ଭାବେ ଚୟନ, ଉନ୍ନୀତ ଏବଂ ଅନୁମୋଦିତ କରାଯିବ ।

ଗ. ସବୁ ଯୋଜନାର ଖର୍ଚ୍ଚର କ୍ରିୟାଶୀଳତା ସତର୍କତାର ସହ ବିଚାରକୁ ନିଆଯିବ, ଯେପରିକି ଏହି ଯୋଜନାରେ ବିନିଯୋଗ ହୋଇଥିବା ପାଣ୍ଠିର ସର୍ବଶ୍ରେଷ୍ଠ ଉପଯୋଗ ହୋଇପାରିବ ।

ଘ. ଯୋଜନାର ସ୍ୱଚ୍ଛତା ଏବଂ ଅବସ୍ଥିତି ନିଶ୍ଚିତ ହେବା ଉଚିତ । ଯୋଜନାଗୁଡ଼ିକର ଉପଯୋଗିତା କ୍ରମାନୁଯାୟୀ ଯଥାଯଥ କାରଣ ସହ ନିର୍ଦ୍ଦିଷ୍ଟ ସ୍ଥାନର ତାଲିକା, ଜିଲ୍ଲା ଯୋଜନା ଏବଂ ପ୍ରଚଳିତ ୱେବ୍‌ସାଇଟ୍‌ରେ ପ୍ରଦର୍ଶିତ ନିଶ୍ଚିତ ଭାବେ କରାଯିବ ।

ଙ. ଆହୁରି ମଧ୍ୟ ନିଶ୍ଚିତ ହେବା ଆବଶ୍ୟକ ଯେ, ଏହି ଯୋଜନାଗୁଡ଼ିକ ପୋଷନୀୟ ଏବଂ ସତର୍କତାର ସହ ସରକାରୀ ସମ୍ପତ୍ତି ସୃଷ୍ଟି କରାଯାଇ ଉପଯୋଗୀ କରାଯିବା ସହ ଯୋଜନା ପରେ ତା'ର ପ୍ରକୃତ ରକ୍ଷଣାବେକ୍ଷଣ କରାଯାଇ ପାରିବ । ସାର୍ବଜନୀନ ସମ୍ପତ୍ତି ସୃଷ୍ଟି କ୍ଷେତ୍ରରେ, ପରବର୍ତ୍ତୀ ସମୟରେ ରକ୍ଷଣାବେକ୍ଷଣ ନିମନ୍ତେ ଏହି କାର୍ଯ୍ୟକ୍ରମରେ ବ୍ୟବସ୍ଥା ହେବ । ଉଦାହରଣ ସ୍ୱରୂପ, ସାଧାରଣ ସଭାଗୃହ ନିର୍ମାଣ କରାଯାଇ ଯେଉଁ ବ୍ୟକ୍ତି ଏହାକୁ ବ୍ୟବହାର କରିବ ସେଥିପାଇଁ ଫିସ୍‌ର ବ୍ୟବସ୍ଥା କରାଯିବ ଯାହାଦ୍ୱାରା ଏକ କର୍ପୋସ୍ ପାଣ୍ଠି ରକ୍ଷଣାବେକ୍ଷଣ ନିମନ୍ତେ ସୃଷ୍ଟି କରାଯାଇପାରିବ ।

ଚ. ଗ୍ରାମର ଜନସଂଖ୍ୟାକୁ ଦୃଷ୍ଟିରେ ରଖି ହରିଜନ ଓ ଆଦିବାସୀ Sub-plan ମୁତାବକ ପାଣ୍ଠି ବ୍ୟବସ୍ଥା ପାଳନୀୟ ଅଟେ ।

**ସାମାଜିକ ହିସାବ ସମୀକ୍ଷା :**

ସାମାଜିକ ହିସାବ ସମୀକ୍ଷା ଏବଂ ଦୁର୍ନୀତି ନିବାରଣ ନିମନ୍ତେ ତୃଣମୂଳ ସ୍ତରରେ ସମସ୍ତ ପ୍ରୟାସ ଜାରୀ ରହିବ । ଜିଲ୍ଲାପାଳ କ୍ଷେତ୍ର ପରିଦର୍ଶନ କରିବା ସହ ସର୍ବନିମ୍ନ କେତେଥର କ୍ଷେତ୍ର ପରିଦର୍ଶନ କରୁଛନ୍ତି, ପ୍ରତ୍ୟେକ କ୍ରିୟାଶୀଳ ତତ୍ତ୍ୱାବଧାରକ ବା ପରିଚାଳନାକାରୀଙ୍କ ପରିଦର୍ଶନ ଅତି ବିଶ୍ୱସନୀୟତାର ସହ କରାଯାଉଛି କି ନାହିଁ ତାହା ନିଶ୍ଚିତ ହେବା ବିଧେୟ । ସରକାରଙ୍କ ପଞ୍ଚାୟତିରାଜ ବିଭାଗ ଅତିରିକ୍ତ ଉପଦେଷ୍ଟା ଓ ମୂଲ୍ୟାୟନ କୌଶଳ, ବିବରଣୀ ଏବଂ ପ୍ରତ୍ୟାର୍ପଣ ଯୋଜନାର ପ୍ରକୃତ ଉପଯୋଗ ନିମନ୍ତେ ସମୟାନୁଯାୟୀ ଉଲ୍ଲେଖ କରିପାରିବେ ।

**ଅନ୍ୟାନ୍ୟ ବିଷୟ ସମୂହ :**

କୌଣସି ସନ୍ଦେହ ଉପୁଜିଲେ ତାହା ଦୂର କରିବା ପାଇଁ ପଞ୍ଚାୟତିରାଜ ବିଭାଗ ଦାୟୀ ରହିବେ ଏବଂ ଯୋଜନା କାର୍ଯ୍ୟକାରିତାରେ କୌଣସି ଅନ୍ତରାୟ ସୃଷ୍ଟି ହେଲେ ସେଗୁଡ଼ିକୁ ଯଥାଶୀଘ୍ର ଦୂର କରିବା ସହ ସମ୍ପୃକ୍ତ ସମସ୍ତଙ୍କ ସହ ଯୋଗସୂତ୍ର ସ୍ଥାପନ କରିବେ ।

ସହ ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର